



**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**

✤✤✤

**୬୩ ବର୍ଷ, ଅଷ୍ଟମ ସଂଖ୍ୟା**
**ମାର୍ଚ୍ଚ, ୨୦୧୪**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www.odishapublication.com


ଅନ୍ୟାନ୍ୟ ବିଭାଗର ଲେଖକ--
**ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ, ଦେବଭାରତୀ**



## ଆମ ଚିଠି ମୁଣିରୁ

**ନୋଡାଲ୍ ଉପ୍ରା ବିଦ୍ୟାଳୟ, ପଳାଶପଂଗା, କେନ୍ଦୁଝରରୁ ପ୍ରଫୁଲ୍ଲ କୁମାର ସାହୁ**-- ମୁଁ ଏବଂ ମୋର ବିଦ୍ୟାଳୟର ପିଲାମାନେ ଏ ପତ୍ରିକାର ପ୍ରିୟ ପାଠକ । ମଲାଟର ପଛ ପାଖରେ ଥିବା ଶିଶୁମାନଙ୍କର ଚିତ୍ରଗୁଡ଼ିକ ଏତେ ଆକର୍ଷଣୀୟ ଯେ ଆମର ପିଲାମାନେ ସେହି ଚିତ୍ର ସବୁକୁ ଅନୁକରଣ କରି ଶ୍ରେଣୀଗୃହରେ ଟାଂଗୁଛନ୍ତି । ପତ୍ରିକାର ଅନ୍ୟାନ୍ୟ ବିଭାଗଗୁଡ଼ିକ ମଧ୍ୟ ଆକର୍ଷଣୀୟ ।

**ମାରୁତି ଭିଲ୍ଲା, ପଟିଆ, ଭୁବନେଶ୍ୱରରୁ ସମରେନ୍ଦ୍ର ଗଗନ ବିନ୍ଦୁ ଦାଶ**- ଜାନୁୟାରୀ ମାସରେ ପ୍ରକାଶିତ ଫେସ୍‌ବୁକ୍ ଓ ମାର୍କ ଜୁକରବର୍ଗ ଶୀର୍ଷକ ପ୍ରବନ୍ଧରେ ଅଛି ଯେ ଏହାକୁ ବ୍ୟବହାର କରିବା ପାଇଁ କୌଣସି ବୟସସୀମା ନାହିଁ । ପ୍ରକୃତରେ ଏହାକୁ ବ୍ୟବହାର କରିବା ପାଇଁ ବୟସସୀମା ୧୪ ବର୍ଷ । ଆହୁରି ମଧ୍ୟ ଶଂଖରୁ ବାହାରୁଥିବା ଶବ୍ଦ ଏହାର ଗଠନ ଅନୁଯାୟୀ ହୋଇଥାଏ । ତାହା ଆମ ରକ୍ତ ସଂଚାଳନର ଶବ୍ଦ ନୁହେଁ ।

**ଧୂମାଭଟା, ବେଲପଡ଼ା, ବଲାଂଗୀରରୁ କେଶବ ଭୋଇ**-- ଏ ମାସରେ ପ୍ରକାଶିତ ଅପୂର୍ବ ଗୁରୁଭକ୍ତି, ସାତ ସଂଖ୍ୟାର ରହସ୍ୟ, ମୁଁ ଜଣେ ଭାରତୀୟ, ତିନୋଟି ମୂଲ୍ୟବାନ ଉପଦେଶ, ଆମ ଶରୀର ହାଡ଼ କଠିନ ଓ ଶକ୍ତ ହୁଏ କିପରି ଏବଂ ବଡ଼ି କବିତା ଖୁବ୍ ଭଲଲାଗିଲା । ଲେଖକ ବନ୍ଧୁମାନଙ୍କୁ ଧନ୍ୟବାଦ ।

**କଟକ- ୧୨ରୁ ଅଜିତାନନ୍ଦ ଗୋସ୍ୱାମୀ**-- ଏ ମାସ ସଂସାରରେ ଥିବା 'ମୁଁ ଜଣେ ଭାରତୀୟ'ରେ ଆଉ କିଛି ତଥ୍ୟ ଦେଇଥିଲେ ଭଲ ହୋଇଥା'ନ୍ତା ।

**ରାଜକିଶୋର ନଗର, ଅନୁଗୁଳରୁ ସଂଗ୍ରାମ କେଶରୀ ପୃଷ୍ଟି**- ଏ ମାସ ସଂସାରରେ 'ମୁଁ ଜଣେ ଭାରତୀୟ' ପ୍ରସଂଗରେ କେତୋଟି ନିଛକ ସତ୍ୟକଥା ସାମିଲ୍ କରିଛନ୍ତି । ଏହା ଭଲ କଥା, ତେବେ ସେଥିରୁ ସବୁଗୁଡ଼ିକ ଶିଶୁକିଶୋର ଉପଯୋଗୀ ନୁହେଁ । ଅଛି-ନାହିଁ ଚିତ୍ରଟି ସ୍ପଷ୍ଟ ନ ଥିବାରୁ ପ୍ରଭେଦ ଖୋଜିବା ପିଲାଙ୍କୁ କଷ୍ଟ ହୋଇପାରେ । ଆଶା ଏଥିପ୍ରତି ଦୃଷ୍ଟି ଦେବେ ।

## ❀❀ ଅଭିନନ୍ଦନ ❀❀

ଆମର ପରିଚିତ କବି ତଥା ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀକୁଞ୍ଜବିହାରୀ ସାହୁଙ୍କୁ ମଥୁରା ନଗରୀ, ବରଗଡ଼ର ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟ ସମ୍ମିଳନୀରେ ଶିଶୁ ସାହିତ୍ୟରେ କୃତିତ୍ୱ ପାଇଁ ସମ୍ମାନିତ କରାଯାଇଛି ଏବଂ ଆମର ପରିଚିତ ଲେଖକ ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟିଙ୍କୁ ରିଆମାଳ, ଦେବଗଡ଼ର 'ନବ ଦିଗନ୍ତ ସାହିତ୍ୟ ସଂସଦ' ତରଫରୁ 'ନବଦିଗନ୍ତ ସାହିତ୍ୟ ସମ୍ମାନ- ୨୦୧୪' ପ୍ରଦାନ କରାଯାଇଛି । ଏମାନଙ୍କର କୃତିତ୍ୱରେ 'ସଂସାର' ଗର୍ବିତ । ସାହିତ୍ୟ ଜଗତରେ ସେମାନଙ୍କର ଉତ୍ତରୋତ୍ତର ଉନ୍ନତି ହେଉ-- ଏତିକି ଈଶ୍ୱରଙ୍କ ନିକଟରେ କାମନା କରିବା ସହ 'ଅଭିନନ୍ଦନ' ଜଣାଉଛୁ ।

--ସଂସାର ପରିବାର

**ଚମ୍ପୂଆ, କେନ୍ଦୁଝରରୁ ରାସେଶ୍ୱର ମହାନ୍ତ**-ଏ ମାସରେ ପ୍ରକାଶିତ 'ଆକସ୍ମିକ ଉଦ୍ଭାବନ' ଲେଖାଟିରେ ଦିଆଯାଇଥିବା କେତେଜଣ ବୈଜ୍ଞାନିକଙ୍କ ଛବି ଏବଂ ସେମାନଙ୍କର ଉଦ୍ଭାବନର ଆକସ୍ମିକତା ବେଶ୍ ମଜାଦାର ।

**ଭଦ୍ରକରୁ ଅଧ୍ୟାପକ କମଳାକାନ୍ତ ଜେନା** -ଏ ମାସର ବିଜ୍ଞାନ ଭିତ୍ତିକ ଲେଖାଗୁଡ଼ିକ ଖୁବ୍ ଭଲ ଲାଗିଲା । ଛୋଟ ଛୋଟ ଜାଣିବା କଥାଗୁଡ଼ିକ ଜ୍ଞାନବର୍ଦ୍ଧକ ହୋଇଛି ।

**ଏ ମାସର ପ୍ରଚ୍ଛଦ-** 'ପ୍ରକୃତିର ନାନୋ-କାରିଗରୀ ବିଦ୍ୟା' ବିଷୟ ସମ୍ପର୍କିତ ନାନୋ କଣିକାର ଚିତ୍ର ।

### ସଂସାରର ନିୟମାବଳୀ

୧ । କାଗଜରେ ଗୋଟିଏ ପାଖରେ ପରିଷ୍କାର ଅକ୍ଷରରେ ଲେଖା ପଠାଇବେ । ଅପ୍ରକାଶିତ ଲେଖା ଫେରାଇ ଦିଆଯାଏ ନାହିଁ ।

୨ । ଏଜେଣ୍ଟମାନଙ୍କ 'ସଂସାର' ବାବଦ ଦେୟ ୨୦ ତାରିଖ ପୂର୍ବରୁ ଆମ ପାଖରେ ପହଞ୍ଚିବା ଆବଶ୍ୟକ, ନଚେତ ପତ୍ରିକା ପଠାଇବା ସମ୍ଭବ ହେବନାହିଁ ।

# ବୁଢ଼ୀ ଲୋକଙ୍କର ଏତେ ବୁଦ୍ଧି

ଶ୍ରୀ ଅକ୍ଷୟ ପଣ୍ଡା

''ଗୁଟୁନ୍ ! ଆରେ ଗୁଟୁନ୍ କୁଆଡ଼େ ଗଲୁ ଆ। ଖେଳାବୁଲା ଛାଡ଼ି ପଢ଼ିବୁ ଆ।'' ବୋଧେ ତାକୁ ଶୁଭୁନି। ଖେଳିବାବେଳେ ସେ ଅନ୍ଧ, ମୂକ, ବଧିର ହୋଇଯାଏ। ତା' ଧ୍ୟାନ ଥାଏ କ୍ରିକେଟ୍ ବଲ୍ ବ୍ୟାଟ୍ ଉପରେ। ଆଇ ତାକୁ କେତେ ବୁଝେଇଲେଣି, ''ପାଠ ନ ପଢ଼ିଲେ ଦୁଇ ପଇସାକୁ ତୋତେ କେହି ପଚାରିବେନି।'' ସିଏ କୋଉଠୁ ସେ କଥା ବୁଝୁଛି ଯେ; ହେଲେ ଗୁଟୁନର ଅଜା ଠିକ୍ ଓଲଟା, ''ବୁବୁଲା ଭଲ ପଢୁଛି। ଡାକ୍ତର ହେବ। ତୁ ତା' ପିଅନ ହୋଇ ଚା'କଫି ଆଣିଦେବୁ।'' ଏମିତି କହି ରାଗନ୍ତି।

ଆଜି ତ ମଉକା ମିଳିଛି । ଅଜା ଆଉ ମାମୁ ଘରେ ନାହାନ୍ତି। ଆଇ କଥାକୁ କିଏ ପଚାରେ ମ ! ସିଏ ନ ଖାଇ ଖୋଇଦିଏ, ଟିକିଏ ନ ଦେଖିଲେ ଆଖିରୁ ଲୁହ ଗଡ଼ାଏ। ସେ କେବେ ମାରିଛି ନା ମାରିବ। ତଥାପି ଛପି ଛପି ଗୁଟୁନ୍ ବାହାରିଲା, ହାତରେ ବ୍ୟାଟ୍ ଧରି। ହସି ହସି ଆକୁଳାକୁ କହିଲା,

''ଅଜା ବୁଲିଗଲେ ନୟାଗଡ଼
ଘରେ କେହି ନାହିଁ ମାରିବେ ମାଡ଼।
ଏତେ ବଢ଼ିଆ ପାଗକୁ ସୁନ୍ଦର ବେଳ
ଚାଲେ ଆକୁଳା ଖେଳିବା ଖେଳ।''

ଆକୁଳାର ରେଞ୍ଜର ସାଇକେଲରେ ବସି ଦୁହେଁ ଚାଲିଲେ ମହାଦେବ ପଡ଼ିଆ ଆଡ଼କୁ। ସେଠାରେ ଦେଖିଲେ ଧଳା କୁକୁରଟା ଲଟ୍‌ପଟ୍ ହୋଇ ଗଡୁଛି। ତାର ପାଖରେ ଆଉ ଦୁଇ ଚାରିଟା କୁକୁର ବଲ ବଲ ଚାହିଁଛନ୍ତି। ଆକୁଳା କହିଲା, ''ଦେଖ ଗୁଟୁନ୍ ଦେଖ। ଧଳା କୁକୁରଟା ବାବା ରାମଦେବଙ୍କର ଯୋଗ ଶିଖାଉଛି। ଆରେ ଗୁଟୁନ୍ ମାରେ ମାରେ ପଥର।'' କଥାଟା ମୁହଁରୁ ନ ସରୁଣୁ ଟେକା ଯାଇ ବାଜିଲା କୁକୁର ଗୋଡ଼ରେ। ଦେଖୁଥିବା କୁକୁରଗୁଡ଼ାକ ଭୋ ଭୋ କରି ଦୌଡ଼ି ଆସିଲେ ତାରି ଆଡ଼କୁ। ଆକୁଳା ସାଂଗକୁ ବଞ୍ଚାଇବ କ'ଣ, ନିଜ କଥା ଭାବି ଛୁ। ଗୁଟୁନ୍‌ଟା ଜୀବନ ବିକଳରେ ଦୌଡ଼ି ଦୌଡ଼ି ଚଢ଼ିଗଲା ବେଲଗଛ ଉପରକୁ।

ଚମ ଧୁଡୁ ଧୁଡୁ ବୁଢ଼ୀଟା ତା' ଚାଳିଘରୁ ବାହାରିଆସିଲା। ଭୋ ଭୋଉଆ କୁକୁରଗୁଡ଼ାକୁ ବାଡ଼ି ଧରି ଘଉଡ଼ାଇ ଦେଲା। ଡରରେ କମ୍ପୁଥିବା ଗୁଟୁନଟା ଫେଁ ଫେଁ ହୋଇ ହସିବାକୁ ଲାଗିଲା। ଏକେ ତ କୁକୁର କାମୁଡ଼ାରୁ ବଞ୍ଚିଗଲା, ଦ୍ୱିତୀୟତଃ ପେଛା ପେଛା ଅଂଗୁରଗୁଡ଼ାକ ବେଲଗଛରେ ଦେଖିବାକୁ ମିଳିଲା। ପିଲାଟାର ହାବଭାବ ଦେଖି ବୁଢ଼ୀଟି କହିଲା, ''ବାପରେ, କିଛି ଅଂଗୁର ତୋଳିଆଣ, ସାଂଗ ହୋଇ ଖାଇବା।'' ଗୁଟୁନର ଆନନ୍ଦ ଦେଖେ କିଏ ! ଆଉ ଡେରି ନ କରି ତୋଳିଲା ଅଂଗୁର।

କେଉଁଠି ରଖିଥିଲା କେଜାଣି, ବୁଢ଼ୀଟି ଶିଢ଼ି ଆଣି ଲଗାଇଦେଲା ବେଲ ଗଛ ଉପରକୁ, ଆଉ କହିଲା, ''ଦେଖି ଚାହିଁ ଆ ବାପ। ବେଲ ଗଛରେ ଲମ୍ବା ଲମ୍ବା କଣ୍ଟା।''

ଗୁଟୁନ୍‌କୁ ତାର ନୁଆଁଣିଆ ଚାଳ ତଳେ ବସାଇ ବୁଢ଼ୀଟି ଧୋଇଧାଇ ଖାଇବାକୁ ଦେଲା ଅଂଗୁର।

ସେ ପଚାରିଲା, ''ବୁଢ଼ୀମା' ଏ ଅଂଗୁର ଗଛ କେଉଁଠି ଅଛି ?'' ବୁଢ଼ୀ କହିଲା-- ମୋର ଘର ଅଛି



ନା ବାଡ଼ି ଅଛି । ରାସ୍ତା କଡ଼ରେ ଏ ଝୁମ୍ପୁଡ଼ିଟି କରିଛି । ଏ ଯେଉଁ ଲୁଆଁଣିଆ ବେଲଗଛ ଦେଖୁଛୁ ନା, ତାର ଖୋଲରେ ରଖିଦେଇଥିଲି ମାଟିର କୁଣ୍ଡଟିଏ ଆଉ ପୋତି ଦେଇଥିଲି ଅଂଗୁରର ଚାରା ଦୁଇଟି । ଗରିବକୁ ଦଇବ ସାହା । ବେଲଗଛର କଣ୍ଟା ଏତେ ମୁନିଆଁ ଯେ ଗାଈଗୋରୁ କିଛି କ୍ଷତି କରି ପାରିବେନି । ଦଇବର ଏତେ କୃପା ଯେ ଫଳ ଖାଇଲେ ମୋର ସରିବନି ।

ଗୁଟୁନ୍‌ର ମନରେ ଉଂକି ମାରିଲା ଅନେକ ପ୍ରଶ୍ନ । ଖୁସିରେ ପଚାରିଲା, "ବୁଢ଼ୀମା', ମୁଁ ତ ତୋର ଏତେ ଅଂଗୁର ଖାଇଦେଲି, ତୋର ମନ ଦୁଃଖ ହେଉନି?"

ବୁଢ଼ୀଟି ଆଉଁସିଦେଇ କହିଲା, "ବାପରେ, ତୁ ମୋ ଗାଁ ପୁଅ । ପାଠ ପଢୁଛୁ । ବଡ଼ ହାକିମ ହେବୁ । କେତେ କଳକାରଖାନା ଗଢ଼ିବୁ । ଗାଁ ଲୋକଙ୍କର ଦୁଃଖ ହାରିବୁ । ଏଇ କେତେଟା ଫଳ ପାଇଁ କାହିଁକି ଦୁଃଖ କରିବି ? କିଏ କହିଲା ବା ତୁ ପର । ତୁ ମୋ ଗାଁର ନାତିଟୋକା । କାଳିଆ-ଠାକୁର ତତେ ଯେମିତି ସୁନ୍ଦର ଦେହ ଦେଇଛି , ସେମିତି ଦେଇଛି ତୋର ସାହସ ।" ଗୁଟୁନ୍‌ର ମନରେ ଭରିଗଲା ଅସୁମାରି ଆତ୍ମବିଶ୍ୱାସ । ସେ ଧନ୍ୟବାଦ ଦେଇ ଫେରିଆସିଲା ଘରକୁ ।

ଗୁଟୁନ ଚୁପ୍‌ଚାପ୍ ବସି ପଢ଼ିବାକୁ ଲାଗିଲା । କେଉଁଠି ଥିଲା କେଜାଣି ଆକୁଳାଟା ଆସି ପହଞ୍ଚିଗଲା । ଆଉ କହିଲା, "ଗୁଟୁନ, କୁକୁରଟା କ'ଣ ତୋର କିଛି କ୍ଷତି କରିନି ?" ଗୁଟୁନ କହିଲା, "ଆରେ ଭାଇ ଚୁପ୍ ରହ । ମୋତେ ଟିକିଏ ପଢ଼ିବାକୁ ଦେ ।"

ତା' ନିଜ ଆଇ ଆସି ଦେଖେ ତ ଗୁଟୁନ୍ ଏକ ଧ୍ୟାନରେ ଗଣିତ କଷୁଛି । ଆଇ ତା' ପଣତକାନିରେ ଆଉଁସି ଦେଇ କହିଲା, "ଆ ଗୁଟୁସ ଖାଇବୁ ଆ ।" ଗୁଟୁନ ମୁହଁରୁ ବାହାରି ଆସିଲା, "ଟିକିଏ ରହ ଲୋ ଆଇ, ମୁଁ ଯାଉଛି । ମୁଁ ଆଗରୁ ଜାଣି ନ ଥିଲି ବୁଢ଼ୀଲୋକମାନଙ୍କର ସତରେ ଏତେ ବୁଦ୍ଧି ।" ଆଇ ହସିଦେଇ କହିଲା, "ହଉ ହଉ ଆ, ଖାଇବୁ ଆ ।"

*ଆଳି, ଲୋକାପଡ଼ା- ୭୫୪୨୧୯*

## ନୀତି ମୁକ୍ତାମାଳା

✤ ତୁମେ ଯଦି ଅନ୍ୟର ଚରିତ୍ରକୁ ନଷ୍ଟ କର, ତେବେ ତୁମର ଚରିତ୍ର ମଧ୍ୟ ନଷ୍ଟ ହୋଇଯାଏ ।

✤ ଏପରି ହସ, ଯେପରି ତୁମେ କେବେ ଜୀବନରେ କାନ୍ଦିନାହଁ । ଏପରି ଖେଳ, ଯେପରି ତୁମେ କେବେ ହାରିନାହଁ । ଏପରି ଭଲପାଅ, ଯେପରି ତୁମେ କେବେ ଅନ୍ୟକୁ କଷ୍ଟ ଦେଇନ । ଏପରି ଜୀବନକୁ ଜିଅଁ, ଯେପରି ଆସନ୍ତାକାଲି ବୋଲି ତୁମପାଇଁ କିଛି ନାହିଁ ।



# ଈଶ୍ୱର ଏକ ଓ ଅଭିନ୍ନ

ଡାକ୍ତର ନିମାଇଁ ଚରଣ ପରିଜା

ମୋଗଲସମ୍ରାଟ ଆକବରଙ୍କ ସଭାରେ ବୀରବଲ ଏକ ଚତୁର ମନ୍ତ୍ରୀ ଥିଲେ । ଅନେକ ସମୟରେ ଆକବର ବୀରବଲଙ୍କ ସଂଗରେ କେତେକ ଧାର୍ମିକ କଥା ଆଲୋଚନା କରିଥା'ନ୍ତି । ଦିନେ ଆକବର ମନ୍ତ୍ରୀ ବୀରବଲଙ୍କୁ ପଚାରିଲେ, "ବୀରବଲ ଆମେ ଆଲ୍ଲାଙ୍କୁ ପୂଜା କରୁ । ଖ୍ରୀଷ୍ଟିୟାନମାନେ ଜିସସ୍ ବା ଯୀଶୁଙ୍କୁ ପ୍ରାର୍ଥନା କରନ୍ତି । କିନ୍ତୁ ହିନ୍ଦୁମାନେ କାହିଁକି ଏତେ ଦେବାଦେବୀଙ୍କୁ ପୂଜା କରନ୍ତି ଓ ନାମ ଦିଅନ୍ତି !" ବୀରବଲ ବେଦରୁ ଉଦ୍ଧୃତ କରି କହିଲେ, "ସମ୍ରାଟ, 'ଈଶ୍ୱର ହେଉଛନ୍ତି ଏକ ଓ ଅଭିନ୍ନ' । ଏହା କେବଳ ଆମମାନଙ୍କର ସୃଷ୍ଟି ଓ ଆମେ ଭିନ୍ନ ଭିନ୍ନ ନାମରେ ଡାକୁ ।" ଏହି କଥା ଶୁଣି ଆକବର ବୀରବଲଙ୍କୁଏହାର ସ୍ୱଷ୍ଟତା ପ୍ରମାଣ କରିବାକୁ ଯାଇ କହିଲେ, "ନଚେତ୍ ମୁଁ ତୁମର ଯୁକ୍ତି ଶୁଣିବି ନାହିଁ, ବରଂ ଦଣ୍ଡ ଦେବି ।"

ବୀରବଲ ସଂଗେ ସଂଗେ ଏହା ପ୍ରମାଣ ସହ କହିବାକୁ ଲାଗିଲେ । ପାଖରେ ଥିବା ଜନୈକ ସେବକଙ୍କୁ ଡାକି ଲୁଗାଟିକୁ ମୋଡ଼ି ତାଙ୍କୁ ପଗଡ଼ି କରି ପିନ୍ଧାଇଦେଲେ । ବର୍ତ୍ତମାନ ସେ ସେଇ ସେବକଙ୍କୁ ପଚାରିଲେ-- ମୁଣ୍ଡରେ ବାନ୍ଧିଥିବା ଲୁଗାଟିକୁ କ'ଣ କହନ୍ତି ? ସଂଗେ ସଂଗେ ସେ ଉତ୍ତର କହିଲା, 'ପଗଡ଼ି' । ବୀରବଲ ତାଙ୍କୁ ଦୂରକୁ ପଠାଇଦେଲେ । ପରେ ପରେ ମୁଣ୍ଡର ପଗଡ଼ିକୁ ଖୋଲିଦେଲେ ଓ ତାକୁ ଘୋଡ଼େଇ ହୋଇପଡ଼ିଲେ । ଆଉ ଜଣେ ସେବକକୁ ଡାକି ପଚାରିଲେ, "ଏଇ ଘୋଡ଼େଇ ହୋଇଥିବା ଲୁଗାକୁ କ'ଣ କହନ୍ତି ?" ସେ କହିଲା, "ଏହା ଘୋଡ଼ାଇ ହେବା ଚାଦର ବା ସାଲ୍ ।" ବର୍ତ୍ତମାନ ବୀରବଲ ତାଙ୍କୁ ମଧ୍ୟ ପଠାଇଦେଲେ । ପରେ ଏହି ସାଲ୍‌ଟିକୁ ନେଇ ସେ ଲୁଗା ଭଳି ପିନ୍ଧିଦେଲେ ଓ ଅନ୍ୟ ଜଣେ ଜଗୁଆଳିକୁ ପଚାରିଲେ, "ଏହାକୁ କ'ଣ କୁହାଯାଏ ?" ସେ କହିଲା, 'ଧୋତି' ।

ବର୍ତ୍ତମାନ ସମ୍ରାଟଙ୍କୁ ଚାହିଁ ବୀରବଲ କହିଲେ, "ମହାରାଜ, ଦେଖିଲେ ତ ! ଗୋଟିଏ ଲୁଗାକୁ ପଗଡ଼ି, ସାଲ୍ ଓ ଧୋତି ଭାବେ କିପରି ବ୍ୟବହାର କରାଯାଏ । ତେଣୁ କୌଣସି ବସ୍ତୁର ପରିବର୍ତ୍ତନ ତାର ସ୍ଥାନ ଓ ବ୍ୟବହାର ଉପରେ ନିର୍ଭର କରିଥାଏ । ମହାଶୟ, ସେହିପରି ପାଣି ମେଘ ହୋଇପାରେ, ନଦୀର ଧାର ହୋଇପାରେ, ବରଫ ମଧ୍ୟ ହୋଇପାରେ । ଏହା ବସ୍ତୁର ବାହ୍ୟରୂପ ଅନୁସାରେ କୁହାଯାଇଥାଏ ; କିନ୍ତୁ ଏହାର ଉପାଦାନ ଏକ ।

ସେହିପରି ମହାଭାଗ ! ଈଶ୍ୱର ଏକ । ତାଙ୍କୁ ବହୁ ନାମରେ ଲୋକେ ବ୍ୟବହାର କରିଥାନ୍ତି ଓ ଏହା ସ୍ଥାନର ପରିବର୍ତ୍ତନ ଓ ବ୍ୟବହାର ଉପରେ ନିର୍ଭର କରିଥାଏ ।"

ବର୍ତ୍ତମାନ ସମ୍ରାଟ ଆକବର ବୀରବଲଙ୍କ ଚତୁରତା ଓ ବୁଦ୍ଧିକୁ ପ୍ରଶଂସା ନ କରି ରହିପାରିଲେ ନାହିଁ ।

*ଅରୁଣୋଦୟ ମାର୍କେଟ, କଟକ*



# ଆମ ଗାଆଁ

ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି

ଆମ ଗାଆଁଟି ଭାରି ସୁନ୍ଦର
ସୁନ୍ଦର ତାର ପାହାଡ଼ ଝର
ସବୁଜ କ୍ଷେତ ମାଳ କେଦାର
ବଣ ବଳୟ ଫୁଲ ସମ୍ଭାର
ଅନ୍ତର ଲୋଭା ତା' ଚାରୁଶୋଭା ନେତ୍ରେ ପଡ଼ିଛି ଯା'ର
ଅଲିଭା ହୋଇ ରହିଯାଇଛି ସତେ ପାଷାଣେ ଗାର ।
ନାଲି ସୂରୁଯ ସକାଳେ ଆସି
ସୁନା ବୁଣନ୍ତି ଗାଆଁରେ ପଶି
ଆମ ଦେଉଳେ ଶୁଭ ମନାସି
ଜୁହାର କରି ହୁଅନ୍ତି ଖୁସି
ଚେଇଁ ଉଠନ୍ତି ଚଢ଼େଇମାନେ ଚିଅଁନ୍ତି ଶିଶୁ, ଚାଷୀ
ମନ୍ଦିର ଘଣ୍ଟ ସୂଚାଇଦିଏ କରମ କର ହସି ।
ସଂଜକୁ ଆସେ ରୂପେଲି ଜହ୍ନ
ସାଂଗରେ ଧରି ଶୀତ ପବନ
ପାଠ ପଢ଼ାରେ କରୁ ଯତନ
ଟୁଂଗୀରୁ ଶୁଭେ ଗୀତ ଭଜନ
ଜୁଳୁଜୁଳିଆ ଆଖି ମିଟିକା ଝିଙ୍କାରି କରେ ସ୍ୱନ
ସାରା ଗାଆଁଟା ଶୋଇପଡ଼ିଲେ ଶୁଭେ ଶିଆଳ ଗାନ ।
ଧୂଳି ମାଟିର ସରୁ ସଡ଼କ
ସୁନ୍ଦର ଘର ମୁହଁ ମୁହଁକୁ ନାକ
ଚଉରା ମୂଳେ ସଂଜ ସକାଳେ
ଜୁହାରି ବୋଉ ଦୀପାଳି ଜାଳେ
ବାଡ଼ିରେ ଆଳୁ ଶାଗ ପଟାଳି କଦଳୀ ସାରୁ ଛୁଇଁ
ବଉଳା ଗାଇ କ୍ଷୀର ପିଆଏ ଅଭାବ ଜାଣୁନାହିଁ ।
ଗାଆଁଟା ସାରା ଯେତେକ ଲୋକ
କକା ମଉସା ଭାଇ ସମ୍ପର୍କ
ସୁଖଦୁଃଖରେ ସଭିଁଏ ଏକ
ଛୁଇଁପାରେନି ବିପଦ ଶୋକ
ସୁଖ ସମ୍ପଦ ସୁହାଗ ସ୍ନେହ ଭରା ଏ ଆମ ଗାଆଁ
ମହତ କାମ କରି ରଖିବୁ ମରତେ ତାର ନାଆଁ ।

*ପାଟରାସାହି, ଆନନ୍ଦପୁର*



ପଶୁପକ୍ଷୀ ହୁଅନ୍ତୁ କି ମଣିଷ ହୁଅନ୍ତୁ, ସବୁ କାର୍ଯ୍ୟରେ ସଫଳତା ପାଇବା ପାଇଁ ଧୈର୍ଯ୍ୟ ଓ ଏକାଗ୍ରତା ଆବଶ୍ୟକ ।



# କୃତଜ୍ଞ-ଦନ୍ତା ହାତୀ

ଇଂ ପ୍ରଭାତ କୁମାର ନନ୍ଦ

ଆଜିକାଲି ପରିବେଶର ସୁରକ୍ଷା ଦିଗରେ ପୃଥିବୀବ୍ୟାପୀ ଜନ ସଚେତନତା ସୃଷ୍ଟି ପାଇଁ ଅହରହ ଉଦ୍ୟମ ଚାଲିଛି । ବହୁ ବିଳମ୍ବ ହେଲେ ମଧ୍ୟ ମଣିଷ ଗୁରୁତ୍ୱ ଉପଲବ୍ଧି କରି ବର୍ତ୍ତମାନ ଲୋପ ପାଇଆସୁଥିବା ଜୀବଜନ୍ତୁ, ବୃକ୍ଷଲତାର ସଂରକ୍ଷଣ ଓ ପ୍ରସାରଣ ପାଇଁ ଅନେକ କାର୍ଯ୍ୟକ୍ରମ ହାତକୁ ନେଲାଣି । ସେ ମଧ୍ୟରୁ ବନ୍ୟଜନ୍ତୁ ସଂରକ୍ଷଣ କାର୍ଯ୍ୟକ୍ରମ ଗୋଟିଏ ଅଂଗ । ବନ୍ୟଜନ୍ତୁମାନଙ୍କ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଜଂଗଲକୁ ସୁରକ୍ଷିତ କରି ରଖିବା ଓ ଏମାନଙ୍କୁ ଲୋକମାନଙ୍କ ଉତ୍ପାତରୁ ସୁରକ୍ଷା ପ୍ରଦାନ କରିବା ଏହି କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ।

ଏହିପରି ଏକ ସୁରକ୍ଷିତ ଜଂଗଲର ସୁରକ୍ଷା ଦାୟିତ୍ୱରେ ଥିବା କର୍ମଚାରୀମାନଙ୍କ ମଧ୍ୟରୁ ଚନ୍ଦ୍ରନ୍ ଅନ୍ୟତମ । ଗତାନୁଗତିକ ଭାବରେ ସେ ସକାଳବେଳା ତାଙ୍କ କାର୍ଯ୍ୟାଳୟରେ କାମ କରୁଥିବା ସମୟରେ ଜଣେ ଜଂଗଲୀ ଲୋକ ଅଫିସ ଭିତରକୁ ପଶିଆସିଲା । ପିନ୍ଧିଥିବା ଲୁଗାପଟାରେ ରକ୍ତର ଦାଗ । ଚନ୍ଦ୍ରନ୍ ମୁଣ୍ଡଟେକି ଲୋକଟି ଆଡ଼କୁ ଚାହିଁଲେ । ଲୋକଟି କହିଲା, "ହଜୁର ! ମୁଁ ଓ ମୋର ସାଂଗ ଜଂଗଲ ଭିତରେ କାଠ ସଂଗ୍ରହ କରୁଥିବା ସମୟରେ ଗୋଟିଏ ବିଶାଳକାୟ ଦନ୍ତାହାତୀ ଜଣେ ସାଂଗକୁ ଗୋଡ଼ରେ ଦଳିଦେଲା । ଆମେ ପ୍ରାଣବିକଳରେ ଚାଲିଆସିଛୁ ଆପଣଙ୍କୁ ଏ ଖବର ଜଣେଇବା ପାଇଁ । ସେ ଦୁଷ୍ଟ ଦନ୍ତା ହାତୀକୁ ନ ମାରିଲେ ଏ ଜଗଂଲରେ ଚଳପ୍ରଚଳ କରିବା ଅସମ୍ଭବ । ତା' ଛଡ଼ା ସେ ମଧ୍ୟ ଏହା ଭିତରେ ଏପଟେ ଥିବା ପଡ଼ା ଗାଁରୁ ଆଉ ଜଣଙ୍କୁ ମାରି-ଦେଇଛି । ଆଖପାଖ ଅଞ୍ଚଳରେ ଫସଲ ଖାଇ ନଷ୍ଟ କରୁଛି । ଅନେକଙ୍କୁ ଗୋଡ଼ାଇ ଆହତ କଲାଣି ।"

ଏ କଥା ଶୁଣି ବନ୍ୟଜନ୍ତୁ ଅଧିକାରୀ ଅନ୍ୟ କର୍ମଚାରୀମାନଙ୍କ ସହ ସଂଗେ ସଂଗେ ଘଟଣାସ୍ଥଳ ପରିଦର୍ଶନରେ ଗଲେ । ଲୋକଟି ସାଂଗରେ ମଧ୍ୟ ଗଲା । ପହଞ୍ଚି ଦେଖିଲେ ଲୋକଟିକୁ ହାତୀ ଗୋଡ଼ରେ ଦଳି ଦେଇଛି । କିନ୍ତୁ, କାହିଁକି ? ବୋଧହୁଏ ପାଗଳ କିମ୍ବା ଦୁଷ୍ଟ ହାତୀ ନିଶ୍ଚୟ । ବିନା କାରଣରେ ବନ୍ୟଜନ୍ତୁ କଦାପି ମଣିଷ ଉପରେ ଆକ୍ରମଣ କରନ୍ତି ନାହିଁ । ସେ ଯାହାହେଉ, ହାତୀର ଏପରି ଅପୌକ୍ତିକ ଉତ୍ପାତକୁ ରୋକିବାକୁ ପଡ଼ିବ । ସେଇ ଜଂଗଲରେ କେତେ ହାତୀ ଅଛନ୍ତି । ପ୍ରଥମେ ଜାଣିବାକୁ ହେବ, କେଉଁ ଦନ୍ତାହାତୀଟିର ଏ କାମ । ହାତୀକୁ ଦେଖିଥିବା ମୃତଲୋକର ସାଂଗକୁ ହାତୀର ଚେହେରା ବର୍ଣ୍ଣନା କରିବାକୁ କହିଲେ ଚନ୍ଦ୍ରନ୍ ।

ଲୋକଟି ଦେଖିଥିବା ହାତୀକୁ ବର୍ଣ୍ଣନା କଲା । ବଡ଼ ବଡ଼ ମୂନିଆଁଦାନ୍ତ; କିନ୍ତୁ ଦାନ୍ତ ଦୁଇଟି ଅଗ ଆଡ଼କୁ ଲାଗି ଆସିଛି । ସାଧାରଣ ଦନ୍ତାହାତୀର ଦାନ୍ତ ମଧ୍ୟରେ ଥିବା ବ୍ୟବଧାନ ଏ ହାତୀର ଦାନ୍ତ ଦୁଇଟିର ଅଗ୍ରଭାଗରେ ନାହିଁ । ବିଶାଳକାୟ ଚେହେରା । ପୂର୍ଣ୍ଣବୟସ୍କ ।

ଖବର ସଂଗ୍ରହ କରି ଚନ୍ଦ୍ରନ୍ ଫେରିଆସି ଉପରିସ୍ଥ ହାକିମଙ୍କୁ ଏ ଘଟଣା ଜଣାଇଲେ । ହାତୀର ଏ ବିପଦ୍‌ଜନକ ଆଚରଣ କଥା ଶୁଣି ଉପରିସ୍ଥ ହାକିମ ଆଉ ଜୀବନହାନି ଓ ଦୁର୍ଘଟଣା ଏଡ଼ାଇବା ପାଇଁ ହାତୀଟିକୁ ମାରିଦେବା ପାଇଁ ସରକାରଙ୍କ ଅନୁମତି ଲୋଡ଼ିଲେ । କାରଣ ସେ ସ୍ଥିରନିଶ୍ଚିତ ହେଲେ ଯେ ହାତୀଟି ଆଉ ସ୍ୱାଭାବିକ ଆଚରଣ କରୁନାହିଁ । ପ୍ରକୃତିର ସମସ୍ତ ନିୟମ ଭଂଗ କରୁଛି । ଏହା ପୂର୍ବରୁ ଏହି ହାତୀଟିର କାର୍ଯ୍ୟକଳାପ ନେଇ ଉକ୍ତ ଅଧିକାରୀଙ୍କ ନିକଟରେ ଅନେକ ଅଭିଯୋଗ ମଧ୍ୟ ପହଞ୍ଚିଥିଲା । ଏପରିକି ଅନେକ ସମୟରେ ଫସଲଗୁଡ଼ିକ ରକ୍ଷା କରିବାକୁ ଯାଇ ଲୋକମାନେ ହାତୀଟିକୁ ଦେଶୀ ବନ୍ଧୁକ ଫୁଟାଇ, ବାଜା ବଜାଇ ଓ ନିଆଁ ଜଳାଇ ଘଉଡ଼ାଉଥିଲେ ।

ସରକାରଙ୍କଠାରୁ ଅନୁମତି ଆସିଗଲା । ଚନ୍ଦ୍ରନ କିନ୍ତୁ ଦୁଃଖିତ ହେଲେ । ସେ ବନ୍ୟଜନ୍ତୁମାନଙ୍କୁ ଶ୍ରଦ୍ଧା କରୁଥିଲେ ।  ସେ କାହିଁକି ଏପରି ବ୍ୟବହାର କରୁଛି ଜାଣିବା ପାଇଁ ସେ ଉପରିସ୍ଥ ହାକିମଙ୍କୁ ସାତ ଦିନ ସମୟ ମାଗିଲେ । ତାଙ୍କରି ଅନୁରୋଧରେ ହାତୀଟିକୁ ମାରିବା କାର୍ଯ୍ୟକ୍ରମ ସାତଦିନ ଘୁଞ୍ଚାଇ ଦିଆଗଲା ।

ପ୍ରଥମ ଦିନ ଚନ୍ଦ୍ରନ୍ ତାଙ୍କ ପୁଅ ମୋହନ ଓ ଆଉଜଣେ ଜଂଗଲ ବିଭାଗ କର୍ମଚାରୀ ସାଥୀ ହୋଇ ହାତୀଟିକୁ ଖୋଜିବା ପାଇଁ ଜଂଗଲକୁ ବାହାରିଲେ । କିଛି ବାଟ ଗଲା ପରେ ସେ ଲୋକଟିର ବର୍ଣ୍ଣନା ଅନୁଯାୟୀ ହାତୀଟିକୁ ଦେଖିଲେ । ସେତେବେଳକୁ ସେ ଦୂରରେ ପହାଡ଼ ପାଦଦେଶରେ ଡାଳପତ୍ର ଖାଉଥିଲା । ଦୂରରୁ ସେମାନେ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିଲେ ଯେ ସେ ବହୁ କଷ୍ଟରେ ଡାଳପତ୍ର ଖାଉଛି । ତା'ଠାରୁ ଅଳ୍ପ ଉଚ୍ଚତାବିଶିଷ୍ଟ ହାତୀ ସ୍ୱଚ୍ଛନ୍ଦରେ ଶୁଣ୍ଢ ଟେକି ଖାଉଥିବାବେଳେ, ଏହାକୁ ବେକକୁ ଟେକିବାକୁ ଦରକାର ପଡୁଛି ଓ ଶୁଣ୍ଢ ଟେକି ପାରୁନାହିଁ । କାରଣ ଶୁଣ୍ଢଟି ତାର ଦୁଇଟି ବଂକା ଦାନ୍ତ ମଧ୍ୟରୁ ସହଜରେ ବାହାରକୁ ଆସି ପାରୁନାହିଁ ।  ଚନ୍ଦ୍ରନ୍ ଭାବିଲେ ବୋଧହୁଏ ଏଇଥିପାଇଁ ହାତୀଟି ଜଂଗଲ ବାହାରକୁ ଆସି ଫସଲ ଖାଇବାକୁ ପସନ୍ଦ କରୁଛି । ଅନ୍ୟାନ୍ୟ କାରଣ ଅନୁସଂଧାନ କରିବା ପାଇଁ ତିନିଜଣଯାକ ପାଣିଧାର ପାଖରେ ଥିବା ଗୋଟିଏ ବଡ଼ ଉଚ୍ଚା ପଥର ଉପରେ ବସି ରହିଲେ । ଖାଇସାରି ହାତୀ ଯେ ପାଣି ପିଇବାକୁ ସେଠାକୁ ଆସିବ-- ଏ ବିଷୟରେ ନିଶ୍ଚିତ ଥିଲେ ।

କିଛି ସମୟ ପରେ ସେ ପାଣି ପିଇବାକୁ ସେଠାକୁ ଆସିଲା । କିନ୍ତୁ ପବନର ଦିଗ ଏମାନେ ବସିବା ପଟରୁ ଥିବାରୁ ହାତୀଟି ମଣିଷର ଉପସ୍ଥିତି ପବନର ଗନ୍ଧରୁ ବାରି ପାରିଲା ଓ ହଠାତ୍ ବୁଲିପଡ଼ି ଏମାନଙ୍କୁ ଦେଖିନେଲା । ସେ ରାଗିଯାଇ ଏମାନେ ବସିଥିବା ପଥର ପାଖକୁ ଝପଟି ଆସିଲା ।  ବହୁ ଚେଷ୍ଟାକଲା ଶୁଣ୍ଢଦ୍ୱାରା ସେମାନଙ୍କୁ ପଥର ଉପରୁ ତଳକୁ ଟାଣିଆଣିବା ପାଇଁ, କିନ୍ତୁ ଦାନ୍ତ ଗଠନର ଅସୁବିଧା ଯୋଗୁଁ ଶୁଣ୍ଢକୁ ଟେକି ପାରୁ ନ ଥାଏ । ପଥର ଚାରିପଟେ ଘୂରି ଘୂରି ଅନେକ ଚେଷ୍ଟାକଲା; କିନ୍ତୁ ନିରାଶ ହୋଇ ଶେଷରେ ଫେରିଗଲା । ଏହି ସମୟରେ ମୋହନ ଲକ୍ଷ୍ୟକଲା ଯେ ତା' କାନର ତଳ ପାଖରେ ଗୋଟିଏ ଅସ୍ୱାଭାବିକ ଆବୁ ବାହାରିଛି । ଏହାକୁ ଦେଖି ଚନ୍ଦ୍ରନ୍ ସ୍ଥିରନିଶ୍ଚିତ ହେଲେ ଯେ କୌଣସି କାରଣରୁ କ୍ଷତ ହୋଇ ଶୁଖି ନ ପାରିବାରୁ ଏହା ସୃଷ୍ଟି ହୋଇଛି ।

ଯାହାହେଉ, ସେମାନେ ଫେରିଆସି ପଶୁଡାକ୍ତରଙ୍କୁ

ଏକଥା କହିଲେ ଓ ସେଇ ଆବୁଟିର ଅସ୍ତ୍ରୋପଚାର କରିବା ପାଇଁ ମଧ୍ୟ ଅନୁରୋଧ କଲେ । ପଶୁଡାକ୍ତର ତ ମଣିଷ । ଗୋଟିଏ ବଣୁଆ ଦନ୍ତାହାତୀ ଦେହରେ ଅସ୍ତ୍ରୋପଚାର! ଡର ଲାଗିବା ସ୍ୱାଭାବିକ । ତଥାପି ଉପାୟ ନିର୍ଣ୍ଣୟ କରିବାରେ ଲାଗି ପଡ଼ିଲେ । ଠିକ୍ ହେଲା ଦୂରରୁ ବନ୍ଧୁକ ସାହାଯ୍ୟରେ ହାତୀ ଦେହରେ ନିଶା ଇଂଜେକସନ୍ ଦେବାକୁ ପଡ଼ିବ । ପରେ ନିଶାଗ୍ରସ୍ତ ହାତୀ ଦେହରେ ଅସ୍ତ୍ରୋପଚାର କରାହେବ । ଏଥିପାଇଁ ହାତୀ ପାଇଁ ଆବଶ୍ୟକ ମୁତାବକ ନିଶା ଔଷଧ ଭର୍ତ୍ତିଥିବା ଗୁଳି ତିଆରି କରାଗଲା । ପରଦିନ ବନ୍ଧୁକ, ନିଶାଗୁଳି ଓ ଡାକ୍ତରଙ୍କୁ ଧରି ସମସ୍ତେ ଚାଲିଲେ ଜଂଗଲକୁ । ହାତୀକୁ ଠାବ କଲେ । ଦୂରରୁ ଚନ୍ଦ୍ରନ୍ ଲକ୍ଷ୍ୟ କରି ନିଶାଗୁଳି ମାରିଲେ । କିନ୍ତୁ ଦୁର୍ଭାଗ୍ୟକୁ ଗୁଳିଟି ପଞ୍ଜରାହାଡ଼ରେ ବାଜି ଖସିପଡ଼ିଲା । ସଂଗେ ସଂଗେ ଦ୍ୱିତୀୟ ଗୁଳି ମାରିଲେ, ତା' ମଧ୍ୟ ବ୍ୟର୍ଥ ହେଲା । ହାତୀଟି ଏ ମଧ୍ୟରେ ବୁଲିପଡ଼ି ଗୋଡ଼ାଇବାକୁ ଆରମ୍ଭ କଲାରୁ ସମସ୍ତେ ପଳାଇ ଆସିଲେ । ଅଭିଯାନ ବ୍ୟର୍ଥ ହେଲା ।

ତା'ପରଦିନ ପୁଣି ଚେଷ୍ଟା କରାଯିବ କି ନାହିଁ, ସେ ବିଷୟରେ ଚିନ୍ତା କଲେ । କାରଣ ସାତ ଦିନ ସମୟରୁ ଏହା ଭିତରେ ଛଅ ଦିନ ଗଲାଣି । ଏହି ସଂକଟ ସମୟରେ ମୋହନ ବାହାରି ପଡ଼ିଲା । ସେ ହାତୀଟିକୁ ପାଖରୁ ଗୁଳି କରିବା ପାଇଁ ଦାୟିତ୍ୱ ନେଲା । କିନ୍ତୁ ତା' ବାପା ଚନ୍ଦ୍ରନ୍, ଏହା ଏକ ଦୁଃସାହସିକ କାର୍ଯ୍ୟ ଭାବି ବାରଣ କଲେ । ତଥାପି ମୋହନର ନିଜ ଉପରେ ଆସ୍ଥା ଥିବା ଦେଖି ପରଦିନ କାର୍ଯ୍ୟକ୍ରମ ସ୍ଥିର ହେଲା ।

ପରଦିନ ସକାଳେ ସମସ୍ତେ ପୁନର୍ବାର ହାତୀଟିର ଅନ୍ୱେଷଣରେ ଚାଲିଲେ । ଠାବ କଲେ ତାକୁ ଗୋଟିଏ ଉଚ୍ଚା, ଗହଳିଆ ଭାବରେ ବଢ଼ିଥିବା ଘାସ ପଡ଼ିଆ ମଝିରେ । ସେଠାରେ ସେ ଘାସ ଖାଇବାରେ ବ୍ୟସ୍ତ ଥିଲା । ମୋହନ ଏହାର ସୁଯୋଗ ନେଇ ଅତି ସତର୍କତାର ସହିତ ହାତୀର ଖୁବ୍ ନିକଟରେ ଥିବା ଗୋଟିଏ ଗଛ ପାଖରେ ପହଞ୍ଚିଲା । ଗଛ ଆଢୁଆଳରେ ରହି ଠିକ୍ ଲକ୍ଷ୍ୟ କରି ଗୁଳି କଲା । ସୌଭାଗ୍ୟକୁ ନିଶାଗୁଳିଟି ହାତୀର ନରମ ଜାଗାରେ ବାଜି ତାର ଶରୀର ଭେଦ କଲା ।

କଅଣ ପଛରେ ବାଜିଲା ଭାବି ବୁଲିପଡ଼ିଲା ବେଳକୁ ମୋହନକୁ ଦେଖିପାରିଲା ଓ ମଣିଷର ଗନ୍ଧ ପବନରୁ ବାରିପାରି ଆକ୍ରମଣ କରିବାକୁ ଆଗେଇ ଆସିଲା । ମୋହନ ପ୍ରାଣ ବିକଳରେ ଦୌଡ଼ିବାକୁ ଲାଗିଲା । ହେଲେ ଜଂଗଲ ଭିତରେ ମଣିଷ ଦୌଡ଼ିବା ବେଳେ ଅନେକ ଅସୁବିଧା ଆସେ, ଯାହାକି ହାତୀ ଆଗରେ କିଛି ନୁହେଁ । ତେଣୁ ସେମାନଙ୍କ ଭିତରେ ଦୂରତା କମି କମି ଆସିଲା ।

ନିଶା ଔଷଧର କାମ ଆରମ୍ଭ ହେବାକୁ ତ କିଛି



ସମୟ ଲାଗିବ ! ମୋହନର ଅତି ନିକଟକୁ ଆସି ଦନ୍ତାହାତୀ ତା' ଶୁଣ୍ଢକୁ ଟେକିବାକୁ ଆରମ୍ଭ କଲାବେଳକୁ ସେଇଠି ଗଡ଼ିପଡ଼ିଲା । ସୌଭାଗ୍ୟକୁ ମୋହନ ବଞ୍ଚିଗଲା ।

ସମସ୍ତେ ସ୍ଥିରନିଶ୍ଚିତ ହେଲେ ଯେ ହାତୀଟି ନିଶା ଔଷଧ ପ୍ରଭାବରୁ ନିଶ୍ଚେତ ହୋଇଗଲା । ତା'ପରେ ଡାକ୍ତର ତା' କାନ ପାଖେ ଆବୁ ଉପରେ ଅସ୍ତ୍ରୋପଚାର କଲେ । ବହୁତ ପୂଜମିଶା ରକ୍ତ ବାହାରିଲା ଓ ଶେଷକୁ ତିନୋଟି ସିସା ଗୁଳି ମଧ୍ୟ ବାହାରିଲା । ବୋଧହୁଏ ଧାନ କ୍ଷେତରୁ ହାତୀକୁ ହୁରୁଡ଼ାଇବା ପାଇଁ କେତେବେଳେ କିଏ ଦେଶୀ ବନ୍ଧୁକରୁ ଏ ଗୁଳି ମାରିଥିଲା । ଯାହାହେଉ, ଏହା ପାଇଁ କେତେ କଷ୍ଟ ପାଇ ନ ଥିବ ସେ ! ଏତେଦିନ ଧରି ଆବଶ୍ୟକ ଔଷଧପତ୍ର ଲଗାଇ ଓ ଇଂଜେକସନ ଦେଇ ଏମାନେ ସମସ୍ତେ ଦୂରକୁ ଚାଲିଆସି ଲକ୍ଷ୍ୟ କଲେ ସେଇ ବିରାଟକାୟ ଦନ୍ତାଟିକୁ ।

ଏହା ଭିତରେ ହାତୀ ପଡ଼ିଯିବାବେଳେ ତାର ଗୋଟିଏ ଦାନ୍ତ ତଳ ପଥରରେ ବାଜି ଖଣ୍ଡେ ଭାଂଗି ଯାଇଥିଲା । କିଛି ସମୟ ପରେ ତାହାର ଚେତା ଫେରିଲା । ଆସ୍ତେ ଆସ୍ତେ ଉଠି ଠିଆ ହେଲା । ବୋଧହୁଏ ଘା'ର କଷ୍ଟ ଆଉ ନ ଥିଲା । ଭଲ ଲାଗୁଥିଲା । ପୂଜ ବାହାରି ଯାଇଥିବା ଓ ଦାନ୍ତଟି ଭାଂଗିଥିବା ହେତୁ ଶୁଣ୍ଢଟି ମଧ୍ୟ ସ୍ୱଚ୍ଛନ୍ଦରେ ଚଳପ୍ରଚଳ କରିପାରୁଥିଲା । ଦୂରରୁ ଲୋକମାନଙ୍କୁ ଦେଖିଲା । କିନ୍ତୁ ଆଉ ଆକ୍ରମଣ କରିବାକୁ ଉଦ୍ୟତ ହେଲାନାହିଁ । ଶୁଣ୍ଢକୁ ଆନନ୍ଦରେ ଟେକି ଜଂଗଲ ଭିତରକୁ ଯିବାକୁ ବାହାରିଲା । ବୋଧହୁଏ ଉପକାର ପାଇଥିବା ଯୋଗୁ ଏମାନଙ୍କୁ ଶୁଣ୍ଢ ଟେକି ଧନ୍ୟବାଦ ଜଣାଇଲା ।

ଏହାପରେ ଅନେକ ଦିନ ବିତିଗଲା । ଆଉ ଦନ୍ତାହାତୀର ଉପଦ୍ରବ ଶୁଣାଗଲା ନାହିଁ । ତା'ର ଆଉ ଆବଶ୍ୟକ ନ ଥିଲା ଜଂଗଲ ବାହାରକୁ ଆସି ଫସଲ ଖାଇବାକୁ । କାରଣ ବର୍ତ୍ତମାନ ଶୁଣ୍ଢକୁ ଟେକି ତା' ଇଲାକାରେ ଥିବା ଗଛଡାଳ ଖାଇବାରେ ତାକୁ ଆଉ କୌଣସି ଅସୁବିଧା ନ ଥିଲା । ପଶୁ ହେଲେ ମଧ୍ୟ ଇଚ୍ଛାଧୀନ ଭାବେ ପ୍ରକୃତିର ନିୟମ ଭାଂଗିବାକୁ ଆଉ ସେ ପସନ୍ଦ କଲାନାହିଁ ।

('ରିଡର୍ସ ଡାଇଜେଷ୍ଟ'ରୁ ସଂଗୃହୀତ)

*ତଳତେଲେଙ୍ଗା ବଜାର, କଟକ-୯*




* ଶିକ୍ଷକ-- "ମୁଁ କାଲି ଷ୍ଟେସନ୍‌ରେ ପହଞ୍ଚିପାରିଲି ନାହିଁ, ଯେହେତୁ ମୋର କାର୍ ଖରାପ ହୋଇଗଲା ।" ଏହାକୁ ଇଂରାଜୀରେ ପ୍ରକାଶ କର ।

ଜଣେ ଛାତ୍ର-- ଆପଣ ତ ସାର୍ ରିକ୍‌ସାଟିଏ ଡାକି ଷ୍ଟେସନ୍ ଚାଲିଯାଆନ୍ତେ । ସେତକ ନ କରି କାହିଁକି ଇଂରାଜୀ ଖୋଜୁଛନ୍ତି?

* ବାପା ଅଫିସ୍‌ରୁ ଫେରିବା ପରେ ପୁଅ ତାଙ୍କୁ ବିରକ୍ତ କରିବାକୁ ଲାଗିଲା । ପଚାରିଲା-- ବାପା ! ଆପଣ ଅଫିସ୍‌ରେ କ'ଣ କରନ୍ତି ?

ବାପା ତା' କଥା ଟାଳିବାକୁ କହିଲେ, "କିଛି ନାହିଁ ।" ପୁଅ କିନ୍ତୁ ଛାଡ଼ିବାର ନୁହଁ । ସଙ୍ଗେ ସଙ୍ଗେ କହିଲା, "ତା'ହେଲେ କିପରି ସବୁବେଳେ କୁହନ୍ତି ଯେ ଅଫିସ୍‌ରେ ଏତେ କାମ ଯେ ଯେତେ ଲାଗିଲେ ମଧ୍ୟ ସାରିହେଉ ନାହିଁ ।"

* ସବିତା ରୋଷେଇ ଘରେ ଚିନି ରହିଥିବା ପାତ୍ରଟିକୁ ଖୋଲିଦେଇ ତା'ଭିତରକୁ ଚାହିଁଦିଏ ଏବଂ ପୁଣି ବନ୍ଦ କରିଦିଏ । ଏପରି ସେ ବାରମ୍ବାର କରିବା ଦେଖି ମା ପଚାରିଲେ-- ସବୁବେଳେ ଚିନି ପାଖକୁ କାହିଁକି ଯାଉଛୁ ?

ମୋର ଡାଇବେଟିସ୍ ଥିବାରୁ ଡାକ୍ତର ସବୁବେଳେ ଶର୍କରା ସ୍ତରଟିକୁ ଚେକ୍ କରିବାକୁ କହିଛନ୍ତି ପରା ।

# ଅଇଁଠା ଖାଇବା ବନ୍ଦ

ସୁଶ୍ରୀ ସବିତା ଭୋଇ

ସୌରଭ ନିତୁ ବିଲେଇକୁ ଖୁବ୍ ଭଲପାଏ। ତା' ସାଙ୍ଗରେ ବସି ପାଠପଢ଼େ, ଖାଏ, ଶୁଏ । ନିତୁ ଛଡ଼ା ସୌରଭ ଘରେ ଅଛି ବିନୁ କୁକୁର୍। ନିତୁ ଓ ବିନୁ ଏ ଦୁହେଁ ଖୁବ୍ ଭଲ ସାଙ୍ଗ। ମିଳିମିଶି ଖେଳନ୍ତି। ନିତୁ ବିନୁ ପିଠିରେ ବସେ। ବିନୁ ତା ମୁଣ୍ଡଟାକୁ ତଳେ ଲମ୍ବେଇ ଦେଇଥାଏ। କେତେବେଳେ କେମିତି ଆଖି ମିଟି ମିଟି କରି ବୁଜିଦିଏ। ପୁଣି କେତେବେଳେ ଆଖି ଖୋଲି ମଟ ମଟ କରି ଚାହିଁଥାଏ। ମାଛି ଆସି ଦେହରେ ବସିଲେ କାନ ଦି'ଟା ହଲେଇଦିଏ। ତାର କଳା ମଚ ମଚ ଦେହଟାକୁ ସୌରଭ ଆଉଁସିଦିଏ।

ସେଦିନ ଘରେ ମାଛ ହୋଇଥିଲା। ସେଇଥିପାଇଁ ନିତୁ ବିନୁ ପାଖକୁ ଯାଇପାରିଲା ନାହିଁ। ଅହରହ ଚୁଲି ମୁଣ୍ଡରେ ବସି ରହିଲା। କାଳେ ମାଛ ତରକାରି ଅଇଁଠା କରିଦେବ ଭାବି ମାଆ ନିତୁକୁ ତାଗିଦ କଲେ। ପୁଣି ଘଉଡ଼େଇ କବାଟଟା ବନ୍ଦ କରିଦେଲେ।

ନିତୁ କି ରହିପାରେ ଆଇଁଷଠୁ ଦୂର ! ଆଇଁଷ ବାସ୍ନାରେ ତା' ପାଟି ଲାଳ ଟକ୍ ଟକ୍ ହେଲାଣି। ବିନୁ ଏପଟେ ନିତୁ କ'ଣ ପାଇଁ ଆସୁନି ଭାବି ଅସ୍ତବ୍ୟସ୍ତ ହେଲାଣି। ନିତୁ ସହ ବିନୁର ଦେଖା ନ ହେଲେ ତା' ମନଟା ଛଟପଟ ହୁଏ।

ନିତୁ ଝରକା ଦେଇ ରୋଷେଇ ଘରକୁ ଡେଇଁ ଆସିଲା। ଡାଙ୍କୁଣିକୁ କାଢ଼ିବାକୁ ଚେଷ୍ଟା କଲା। ଠିକ୍ ଏତିକିବେଳକୁ ମାଆ କବାଟଟା ଖଟ୍‌କିନା ଖୋଲିଦେଲେ। ନିତୁ ଲୁଚିକି ବାହାରି ଆସିଲା। ମାଆ ସୌରଭ ପାଇଁ ଭାତ ବାଢ଼ିଲେ। ଖାଇବା ଟେବୁଲ୍ ଉପରେ ଭାତ ଥୋଇ ସୌରଭକୁ ଡାକିଲେ।

ମାଆ ଟିକିଏ ସେଇଠୁ ଖସିଲା ପରେ ନିତୁ ଟେବୁଲ୍ ତଳୁ ଉପରକୁ ଉଠି ଆସିଲା । ମାଛଖଣ୍ଡେ ଧରି ପଳେଇଲା। ନିତୁ ମାଛ ନେଉଥିବାର ଦେଖି ମାଆ ସୌରଭକୁ ଯେତିକି ରାଗିଲେ, ତା'ଠୁ ବେଶୀ ନିତୁକୁ ରାଗିଲେ । ବାଡ଼ିଟିଏ ଆଣି ନିତୁକୁ ଦୁଇପାହାର ଲଦିଦେଲେ। ନିତୁ ମାଡ଼ ଖାଇ ବହୁତ ଦୁଃଖିତ ହେଲା। ମାଆ ସୌରଭ ପାଇଁ ଆଉଥରେ ବାଢ଼ିଲେ। ଏଥର ସୌରଭ ଖାଇ ବସିଲା। ନିତୁକୁ ମନେ ମନେ ଖୋଜିଲା। ନିତୁ ମାଡ଼ ଖାଇ ଖୁବ୍ କଷ୍ଟ ପାଉଥିଲା। ମାଆ ସୌରଭ ଛାଡ଼ି ଯାଇଥିବା ମାଛଭାତ ବିନୁ ପାଖକୁ ନେଇକି ଗଲେ। ବିନୁ କିନ୍ତୁ ଖାଇଲା ନାହିଁ। ତା' ପ୍ରିୟ ସାଙ୍ଗକୁ ଅପେକ୍ଷା କଲା। ଏତିକିବେଳ ନିତୁ ମନ ଦୁଃଖରେ ବିନୁ ପାଖରେ ପହଞ୍ଚିଲା। ସବୁ ଘଟଣା କହିଲା।

ସବୁ କଥା ଶୁଣି ବିନୁ ନିତୁକୁ ଭୋ ଭୋ କରି ଖୁବ୍ ରାଗିଲା ଏବଂ କହିଲା, "ସୌରଭଭାଇ ତତେ କେତେ ଭଲପାଆନ୍ତି। ଶେଷରେ ତୁ ଚୋରି କରି ଖାଇଲୁ ! ହଇରେ ନିତୁ ! ଟିକିଏ ଅପେକ୍ଷା କରିଥିଲେ ସୌରଭ ଭାଇ ତତେ ଖାଇବାକୁ ଦେଇ ନ ଥା'ନ୍ତେ।" ଏକଥା ଶୁଣି ମ୍ୟାଉଁ ମ୍ୟାଉଁ କରି ମୁଣ୍ଡ ହଲେଇ ହୁଁ କଲା। ନିତୁ

ଅଭିମାନ କରି କହିଲା-- ମିଛ କଥା ସୌରଭ ଭାଇ ମତେ ଭଲପାଉଥିଲେ, ମତେ ଛାଡ଼ିକି ଖାଇଥାଆନ୍ତେ କି ? ଛୋଟ ମାଛ ଖଣ୍ଡିଏ ଦେଇ ଏକା ଏକା ଖାଇ ଯାଆନ୍ତି । ପେଟ ଭରେନା । ଶେଷରେ ସବୁଠି ଅଇଁଠା ଚାଟିବାକୁ ହୁଏ ।"

ବିନୁ ଏସବୁ ଶୁଣି ଦୁଃଖିତ ହୋଇ କହିଲା-- ଓ ଏମିତି କଥା । ମୁଁ ଭାବୁଥିଲି ତୁ ଏମାନଙ୍କ ସାଙ୍ଗରେ ଭଲ ଖାଦ୍ୟ ଖାଉଥିବୁ । ଏଥର ବିନୁ ଟିକିଏ ଭାବି କହିଲା-- "ତୁ ଅଇଁଠା କରିବାରୁ ସୌରଭ ଭାଇ ଖାଇଲେ ନାହିଁ । ଆଚ୍ଛା ନିତୁ, ତାଙ୍କ ଅଇଁଠା ଆମେ କାହିଁକି ଖାଇବା? ନିତୁ ଏକଥାରେ ଏକମତ ହୋଇ କହିଲା-- ସମାଜରେ ଆମର ତ ପୁଣି ସମ୍ମାନ ଅଛି । ଆଜି ଦିନଠୁ ଅଇଁଠା ଖାଇବା ନାହିଁ । ଅଇଁଠା ଖାଇ କାଳେ କେଉଁ ରୋଗ ଆକ୍ରମଣ କରିବ ।"

"ସତକଥା ନିତୁ ! ନହେଲେ ନାଇଁ ଭୋକରେ ପଡ଼େ ରହିବା, ହେଲେ ଅଇଁଠା ଜମା ଖାଇବା ନାହିଁ ।" ବିନୁ ଏପରି କହି ସିନା ଦେଲା, ଟିକିଏ ଚିନ୍ତିତ ହୋଇ କହିଲା, "ନିତୁ! ତା'ହେଲେ ଆମେ ବଞ୍ଚିବା କେମିତି? କ'ଣ ଖାଇବା ?" ନିତୁ ଆଶ୍ୱାସନା ଦେଇ କହିଲା-- ଚିନ୍ତା କରନା । ମୁଁ ଘର ବାହାରକୁ ଯିବି । ବଡ଼ ବଡ଼ ମୂଷା ଧରି ଆଣିବି । ଦୁହେଁ ଭାଗ ବଣ୍ଟା କରି ଖାଇବା ।

ସକାଳ ହେଲା । ସୌରଭ ଆସି ଦେଖିଲା ବିନୁ ଭାତମାଛ ଜମାରୁ ଛୁଇଁନି । ସେ ବିନୁର ଆଉ ଟିକିଏ ପାଖକୁ ଆସିଲା । ସୌରଭକୁ ବିନୁ ମୋଟେ ଚାହିଁଲା ନାହିଁ । ବରଂ ରୁଷିକି ଗୋଡ଼ରେ ଖାଦ୍ୟକୁ ଠେଲିଦେଲା ।

ସୌରଭ ସବୁ ବୁଝିଗଲା ।ଏ ଦୁହେଁ ଅଭିମାନରେ ଖାଉନାହାନ୍ତି । ତେଣୁ ଦୌଡ଼ି ଦୌଡ଼ି ଯାଇ ରୋଷେଇଘରୁ ଦୁଧ ସଙ୍ଗେ ରୋଟି ଆଣିଲା । ବିନୁ ଓ ନିତୁକୁ ଭାଗ କରି ଦେଲା । କିନ୍ତୁ ସୌରଭର ମୁହଁକୁ ଚାହିଁ ଲାଞ୍ଜ ହଲାଇ ଖାଇଗଲା ।

ନିତୁକୁ ମଧ୍ୟ ସୌରଭ ଆଉଁସିଦେଇ କହିଲା, "ରାଗିଲୁ କିରେ ନିତୁ । ତୁ ଗତକାଲି ଦୁଷ୍ଟାମି କଲୁ ନା, ସେଇଥିପାଇଁ ମା'ରାଗିଲେ ।" ନିତୁ ଖୁସିରେ ଦୁଧ ପିଇଗଲା । ରୋଟିତକ ପୁଣି ଖାଇଲା । ସବୁ ରାଗରୋଷ ଦୁହେଁ ଭୁଲିଗଲେ । ହେଲେ ଦୁହେଁ ମନେ ମନେ କହୁଥିଲେ- ଏଥର ଅଇଁଠା କରିବେ ନାହିଁ କି ଅଇଁଠା ଖାଇବେ ନାହିଁ ।

*ଦମକିପାଲି, ପାଟଣାଗଡ଼*

***

## ଧନ୍ଦା

ଦେବଭାରତୀ

ଟାଣ ଗୋଲା ଘରେ ପଡ଼େ କବାଟ
ମଣିଷ ନୁହେଁ ସେ ଚାଲଇ ବାଟ ।
ପଶୁ ନୁହେଁ ଶିଂଘ ଦୁଇଟି ଥାଏ
ଟାଣ ମାଉଁସ ତା' କିଏ ସେ ଖାଏ ?
ତା' ନାଁଟି କହିବ ଯିଏ,
ସଂସାର ପ୍ରିୟ ହୋଇବ ସିଏ ।

*ଶାନ୍ତି ଧାମ, ଧଣ୍ଡାମୁଣ୍ଡା, ବଲାଙ୍ଗିର- ୭୬୭୦୨୮*

(ଉତ୍ତର ୧୬ ପୃଷ୍ଠାରେ)

# ବାଦଲଫଟା ବର୍ଷା

ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ

ରମେଶବାବୁ ଖରାକୁ ପିଠି କରି ବସି ଖବର କାଗଜ ପଢୁଥିଲେ। ତାଙ୍କ ନାତୁଣୀ ଲୁସି ଦଶମ ଶ୍ରେଣୀରେ ପଢ଼େ। ସେ ତାଙ୍କୁ ଚା'କପ୍‌ଟିଏ ଧରେଇଦେଇ କହିଲା, "ଆଚ୍ଛା ଜେଜେ! ତୁମେ ତ ସବୁଦିନ ଖବର କାଗଜ ପଢୁଛ। ଟିଭିରୁ ଖବର ବି ଦେଖୁଛ। ତେବେ କହିଲ ଦେଖି, ଗତ ଦୁଇ ହଜାର ମସିହାରେ ଆମ ଦେଶରେ ହୋଇଥିବା ସବୁଠାରୁ ଭୟଙ୍କର ପ୍ରାକୃତିକ ବିପର୍ଯ୍ୟୟର ନାମ କ'ଣ ?" ଲୁସିର ଜେଜେ ରମେଶବାବୁ ଥିଲେ ବିଜ୍ଞାନ ଶିକ୍ଷକ। ସେ ହସିଦେଇ କହିଲେ, "ଆରେ ତୁ କଣ ମୋର ସାଧାରଣ ଜ୍ଞାନର ପରୀକ୍ଷା ନେଉଛୁ ! ତୁ ପ୍ରଥମେ ଏହାର ଉତ୍ତର ଦେ। ମୁଁ ଦେଖେ ତୁ ଠିକ୍ କହୁଛୁ ନା ଭୁଲ୍ ?"

ଜେଜେଙ୍କ କଥା ଶୁଣି ଲୁସି କହିଲା-- "ଫାଇଲିନ୍"। ଲୁସି ସହିତ ଥିଲା ତା' ସାନ ଭଉଣୀ ଖୁସି। ସେ ଅଷ୍ଟମ ଶ୍ରେଣୀରେ ପଢ଼େ। ସେ କହିଲା, "ନା, ନା ଜେଜେ, ତାହା ହେଉଛି ବାଦଲଫଟା ବର୍ଷା।" ଜେଜେ କହିଲେ, "ଆଚ୍ଛା ଏହି ବାଦଲଫଟା ବର୍ଷା କାହିଁକି ହୁଏ, ସେ ବିଷୟରେ କିଛି ଜାଣିଛ ?" ଲୁସି, ଖୁସି ଦୁହେଁ କିଛି କହି ନ ପାରି ଜେଜେଙ୍କ ମୁହଁକୁ ଚାହିଁ ରହିଲେ। ଏହା ଦେଖି ଜେଜେ କହିଲେ--"ତୁମେ ଏହା ବିଷୟରେ ଜାଣିବାକୁ ଚାହୁଁଛ ତ ଶୁଣ।"

ଖୁସି କହିଲା, "ଆଚ୍ଛା ଜେଜେ, ବର୍ଷା ତ ବର୍ଷା। ଏଇ ବାଦଲଫଟା ବର୍ଷା ପୁଣି କ'ଣ ? ସତରେ କ'ଣ ବାଦଲ ଫାଟିଯାଏ ?" ଜେଜେ କହିଲେ, "ଆରେ ନାହିଁ ରେ ନାହିଁ, ବାଦଲ ଫାଟିବ କାହିଁକି ? ଆଗେ ଲୋକମାନେ ଭାବୁଥିଲେ ବାଦଲ ହେଉଛି ଏକ କଠିନ ବସ୍ତୁ। ତା' ପେଟରେ ପାଣି ଭର୍ତ୍ତି ହୋଇକରି ରହିଥାଏ। ଆଉ ତାହା ଫାଟିଗଲେ ବର୍ଷା ହୁଏ। ତେଣୁ କୌଣସି କାରଣରୁ ଅତ୍ୟଧିକ ବର୍ଷା ହେଲେ ତାକୁ ସେମାନେ ବାଦଲଫଟା ବର୍ଷା ବୋଲି କହନ୍ତି। ପାଣିପାଗ ବିଶେଷଜ୍ଞମାନେ ଏହାକୁ କ୍ଲାଉଡ୍ ବର୍ଷ୍ଟ (Cloud Brust) ବା (Showery Rain) ବୋଲି କହିଥାନ୍ତି। ଏହା ହେଲେ ଅତ୍ୟଧିକ ବୃଷ୍ଟି ସହିତ ଝଡ଼ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ହୋଇଥାଏ। ବେଳେବେଳେ ପ୍ରବଳ ବର୍ଷା ସହିତ କୁଆପଥର ମାଡ଼ ମଧ୍ୟ ହୁଏ। ପାଣିପାଗ ବିଶେଷଜ୍ଞଙ୍କ ମତରେ-- ଏହାଦ୍ୱାରା ଘଣ୍ଟାକ ମଧ୍ୟରେ ଶହେ ମିଲିମିଟରରୁ ଅଧିକ ବର୍ଷା ହୋଇଥାଏ। ବେଳେବେଳେ ତିନି ଚାରି ମିନିଟ୍ ମଧ୍ୟରେ ପ୍ରାୟ କୋଡ଼ିଏ ମିଲିମିଟର୍ ବର୍ଷା ହୋଇ ବନ୍ୟା ପରିସ୍ଥିତି ସୃଷ୍ଟି କରିଥାଏ।

ଲୁସି କହିଲା, "ଆଚ୍ଛା ଜେଜେ, ଏହା ହୁଏ କାହିଁକି?" ଜେଜେ କହିଲେ, "ଆରେ ମୁଁ ସେହି କଥା ତ କହୁଛି। ତୁମେ ଜାଣିଛ ବର୍ଷା ଋତୁରେ ମୌସୁମୀ ପ୍ରବାହ ହୁଏ। ଫଳରେ ବର୍ଷା ହୁଏ। ମୌସୁମୀ ବାୟୁ ବଂଗୋପସାଗରରୁ ବାହାରି ଗାଂଗେୟ ସମତଳ ଭୂମି ଦେଇ ଉତ୍ତରକୁ ଗତି କରେ। କ୍ରମଶଃ ଏହା ଉତ୍ତର ଦିଗରେ ଥିବା ହିମାଳୟ ପାର୍ବତ୍ୟାଞ୍ଚଳ ଉପରକୁ ଉଠିଯାଏ। ବେଳେବେଳେ ବାୟୁପ୍ରବାହର ବେଗ ବଢ଼ିଯାଇ ତୋଫାନର ରୂପ ଧାରଣ କରେ। ଏହା ଫଳରେ ଅନେକଗୁଡ଼ିଏ ବାଦଲ ଆସି ଗୋଟେ ନିର୍ଦ୍ଦିଷ୍ଟ ଜାଗାରେ ଏକାଠି ହୋଇଯା'ନ୍ତି। ହଠାତ୍ ବାୟୁପ୍ରବାହର ଗତି କମିଗଲେ କିମ୍ବା ବନ୍ଦ ହୋଇଗଲେ ସେମାନେ ଏକ ସମୟରେ ଘନୀଭୂତ ହୋଇଯା'ନ୍ତି। ସେଠାରେ ଥିବା

ଜଳକଣାଗୁଡ଼ିକ ବଡ଼ ବଡ଼ ଟୋପାରେ ପରିଣତ ହୋଇ ଖୁବ୍ ଜୋରରେ ତଳକୁ ଖସନ୍ତି। ଏହାକୁ 'ବାଦଲଫଟା' ବର୍ଷା କୁହାଯାଏ।



"ଜେଜେ, ଗତବର୍ଷ ତ ଏହି ବାଦଲଫଟା ବର୍ଷା ଉତ୍ତରାଖଣ୍ଡର ଅନେକ ଧନଜୀବନ ନଷ୍ଟ କରିଛି। ଆମ ଦେଶରେ କେବେ ଏପରି ବର୍ଷା ହୋଇଥିଲା ନା ପ୍ରଥମଥର ପାଇଁ ଏଥର ହୋଇଛି ?" ଖୁସି କହିଲା। "ଆମ ଦେଶରେ ଅନେକଥର ଏପରି ବର୍ଷା ହୋଇଛି। ୧୯୭୦ ମସିହାରେ 'ବୋରୋଟ'ଠାରେ ୧ ମିନିଟ୍‌ରେ ୩୮ ମିଲିମିଟରଠାରୁ ଅଧିକ ବର୍ଷା ହୋଇଥିଲା। ବୃଷ୍ଟିପାତର ପରିଣାମ ଦୃଷ୍ଟିରୁ ଏହା ସର୍ବାଧିକ। ୧୯୯୮ ମସିହାରେ ଏହି ବର୍ଷା ଯୋଗୁ ଉତ୍ତରାଖଣ୍ଡର ମାଲପା ଗ୍ରାମର ପ୍ରାୟ ଅଢ଼େଇଶହ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ। ବିଶିଷ୍ଟ ଓଡ଼ିଶୀ ନୃତ୍ୟଶିଳ୍ପୀ ପ୍ରତିମା ବେଦୀଙ୍କ ତୁମେ ଜାଣିଛ ନିଶ୍ଚୟ। ଏହି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ଆମେ ତାଙ୍କୁ ହରାଇଥିଲୁ । ଆଉ ଗତବର୍ଷ ଏହି ବର୍ଷା ଯୋଗୁ ଉତ୍ତରାଖଣ୍ଡରେ ହୋଇଥିବା ବିପୁଳ କ୍ଷୟକ୍ଷତି କଥା ତୁମେ ଜାଣିଛ।"

ଏହା ଏକ ସୀମିତ ଅଞ୍ଚଳରେ ହେଉଥିବା କଥା ତ ତୁମକୁ କହିଛି। ଅଧିକ ବର୍ଷା ଯୋଗୁ ବନ୍ୟା ପରିସ୍ଥିତି ସୃଷ୍ଟି ହୋଇଥାଏ। ପାର୍ବତ୍ୟାଞ୍ଚଳରେ ବନ୍ୟାପ୍ରବାହର ବେଗ ଯଥେଷ୍ଟ ଅଧିକ। ତେଣୁ ମୃତ୍ତିକା କ୍ଷୟ ଘଟି ଭୂସ୍ଖଳନ ଘଟିଥାଏ। ଏପରିକି ନଦୀନାଳର ମଧ୍ୟ ଦିଗ ପରିବର୍ତ୍ତନ ଘଟିଥାଏ। ଏହା ଫଳରେ ଅନେକ ଧନଜୀବନ ନଷ୍ଟ ହେବା ସହିତ ନଦୀବନ୍ଧ ଓ କେନାଲ ମଧ୍ୟ କ୍ଷତିଗ୍ରସ୍ତ ହୋଇଥାନ୍ତି।

ଖୁସି କହିଲା, "ଜେଜେ, ଆମ ବିଜ୍ଞାନ ତ ଏତେ ଅଗ୍ରଗତି କଲାଣି। ଏଥର ବୈଜ୍ଞାନିକମାନେ ଫାଇଲିନ୍ କଥା ଜାଣି ଆମକୁ ଆଗରୁ ସତର୍କ କରିଦେଇଥିଲେ। ଫଳରେ ଅନେକ ଲୋକଙ୍କ ଜୀବନ ରକ୍ଷା କରାଯାଇ ପାରିଛି। ସେହିପରି ବାଦଲଫଟା ବର୍ଷା ପାଇଁ କଣ ଆଗୁଆ ସୂଚନା ମିଳିପାରିବନି ?"

"ନା, ଏହାର ପୂର୍ବାନୁମାନ ଏ ପର୍ଯ୍ୟନ୍ତ କରାଯାଇ ପାରିନାହିଁ । ଫଳରେ ପ୍ରଭାବିତ ହେବାକୁ ଥିବା ଅଞ୍ଚଳବାସୀଙ୍କୁ ଆଗୁଆ ସୂଚନା ଦେଇ ସତର୍କ କରାଯାଇ ପାରୁନାହିଁ। ସାଧାରଣ ବନ୍ୟା ତୁଳନାରେ ବାଦଲଫଟା ବର୍ଷା ଯୋଗୁ ହେଉଥିବା ବନ୍ୟା ଅତ୍ୟନ୍ତ ଭୟଙ୍କର। ସାଧାରଣ ବନ୍ୟାର ଲୋକ ଭାସିଯିବା ବା ବୁଡ଼ିଯିବାର ଆଶଂକା ଥାଏ। ମାତ୍ର ଏଥିରେ ବନ୍ୟା ସହିତ ଭୂସ୍ଖଳନ ଓ କାଦୁଅ ପ୍ରବାହ ଘଟି ପରିସ୍ଥିତି ଖୁବ୍ ଭୟଙ୍କର ହୋଇଉଠେ। ଏହି ସମୟରେ କାହାକୁ ଉଦ୍ଧାର କରିବା ସମ୍ଭବ ନୁହେଁ। ଅଳ୍ପ ସମୟ ମଧ୍ୟରେ ମଣିଷ ତଥା ଜୀବଜନ୍ତୁ କାଦୁଅରେ ପୋତି ହୋଇ ପ୍ରାଣ ହରାନ୍ତି।

ଏହାକୁ ତ ବନ୍ଦ କରିପାରିବା ନାହିଁ, ତେବେ ନିଜଆଡୁ କିଛି ସତର୍କତାମୂଳକ ପଦକ୍ଷେପ ଗ୍ରହଣ କରି-ପାରିବା । ପାହାଡ଼ିଆ ଅଞ୍ଚଳରେ ଏହା ଅଧିକ

ହୋଇଥାଏ । ଆମେ ଆମ ସ୍ୱାର୍ଥ ପାଇଁ ଜଂଗଲ କାଟି ପଦା କରି ଦେଉଛୁ । ଜଂଗଲରେ ଗଛ ରହିଲେ ମୃତ୍ତିକା କ୍ଷୟର ପରିମାଣକୁ ହ୍ରାସ କରାଯିବା ସହିତ ବନ୍ୟାକୁ ମଧ୍ୟ ଅନେକ ପରିମାଣରେ ରୋକା ଯାଇପାରିବ । ତେଣୁ ଜଂଗଲର ସୁରକ୍ଷା କରାଯିବା ସହିତ ଖାଲି ଥିବା ଜାଗାରେ ଗଛ ଲଗାଇବା ନିହାତି ଦରକାର । ଡାଲୁ ତଥା ଗଡ଼ାଣିଆ ଅଞ୍ଚଳରେ ଭୂସ୍ଖଳନର ଆଶଂକା ଅଧିକ । ତେଣୁ ସେପରି ଜାଗାରେ ଘର କରାଯିବା ଉଚିତ ନୁହେଁ । ଏପରିକି କୌଣସି ନିର୍ମାଣ କରାଯିବା ମଧ୍ୟ ଅନୁଚିତ । ଲୋକଙ୍କୁ ଏ ସମ୍ପର୍କରେ ସଚେତନ କରାଯିବା ଆବଶ୍ୟକ । ପଟୁ ଯୋଗୁ ପ୍ରାକୃତିକ ଜଳାଶୟ ସବୁ ପୋତି ହୋଇ ପଡୁଛି । ତେଣୁ ଏଥିରୁ ନିୟମିତ ପଟୁ ଉଦ୍ଧାର କରାଗଲେ ଏହାର ଜଳଧାରଣ କ୍ଷମତା ବୃଦ୍ଧି ପାଇବ । ଫଳରେ ବନ୍ୟାର ପରିମାଣ ମଧ୍ୟ କିଛି କମାଇ ଦିଆଯାଇ ପାରିବ ।

"ଜେଜେ, ସତରେ କଣ ଆମେ ବାଦଲଫଟା ବର୍ଷା ପାଖରେ ହାରିଯିବା ? ଆମେ କଣ କେବେ ବି ଏହାର ପୂର୍ବାନୁମାନ କରି ପାରିବାନି ?" ଖୁସିର କଥା ଶୁଣି ଜେଜେ କହିଲେ, "ଆରେ ମଣିଷର ଅସାଧ୍ୟ କଣ ଅଛି କହିଲ ? ତିରିଶ ବର୍ଷ ତଳେ କ'ଣ ଝଡ଼ବାତ୍ୟାର ପୂର୍ବାନୁମାନ କରାଯାଇ ପାରୁଥିଲା ? ୧୯୯୯ ମସିହାରେ ମହାବାତ୍ୟାରେ କେତେ ଧନଜୀବନ ହାନି ହୋଇ ନ ଥିଲା ! ଅଥଚ ଏଥରକ ଆମେ ପୁଣି ଫାଇଲିନ୍‌ର ମୁକାବିଲା ସଫଳତାର ସହିତ କରିପାରିଲୁ । ଆଜି ଆମେ ଏ ଦିଗରେ ସଫଳତା ପାଇପାରିନୁ ବୋଲି ଯେ ଭବିଷ୍ୟତରେ ପାରିବୁନି, ଏକଥା କାହିଁକି ଭାବୁଛ ? ମନଦେଇ ପାଠ ପଢ଼ । ବଡ଼ ହେଲେ ତୁମେ ବି ହୁଏତ ଏହାର ପୂର୍ବାନୁମାନ କରି ଅନ୍ୟକୁ ଜଣାଇପାରିବ ।

*ମଣ୍ଡୁଆ, କେନ୍ଦୁଝରଗଡ଼- ୭୫୮୦୧୪*




ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ

୧ । ଯୁକ୍ତରାଷ୍ଟ୍ର ଆମେରିକାରେ ନିର୍ବାଚିତ ହୋଇଥିବା ସବୁଠାରୁ ଡେଙ୍ଗା ରାଷ୍ଟ୍ରପତିଙ୍କର ନାମ କ'ଣ ?

୨ । ଡିଣ୍ଡିଗୁଲ (Dindigul) କେଉଁ ରାଜ୍ୟର ଏକ ଜିଲ୍ଲାର ନାମ ?

୩ । BIS ର ପୂର୍ଣ୍ଣରୂପଟି କ'ଣ ?

୪ । ସ୍କୋଜେ (Skopje) କେଉଁ ଦେଶର ରାଜଧାନୀର ନାମ ଅଟେ ?

୫ । ମୁକାମ୍ବିକା ବନ୍ୟ ଜନ୍ତୁ ଅଭୟାରଣ୍ୟ (Mukambika Wild Life Sanctuary) କେଉଁ ରାଜ୍ୟରେ ଅବସ୍ଥିତ ?

୬ । 'The Prince' ପୁସ୍ତକର ରଚୟିତା କିଏ ?

୭ । ଭାରତୀୟ ଜାତୀୟ କଂଗେସ (Indian National Congress)ର ନାମକରଣ କିଏ କରିଥିଲେ ?

୮ । ରାଧାମୋହନ କପ୍ କେଉଁ ଖେଳ ସହ ସମ୍ପୃକ୍ତ?

୯ । ବିଶ୍ୱ ଅଣ୍ଡା ଦିବସ (World Egg Day) କେବେ ପାଳନ କରାଯାଇଥାଏ ?

୧୦ । ଉସ୍ତାଦ ମନସୁର କେଉଁ ମୋଗଲ ସମ୍ରାଟଙ୍କ ଦରବାରର ଜଣେ ପ୍ରଖ୍ୟାତ ଚିତ୍ରକର ଥିଲେ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ-୭୫୯୧୦୦*

(ଉତ୍ତର ୧୯ ପୃଷ୍ଠାରେ)

# ଝୁମୁକାବାଲାରେ ଝୁମୁକାବାଲା

ଶ୍ରୀ ଦେବେନ୍ଦ୍ର ଚୌଧୁରୀ

ଝୁମୁକାବାଲାରେ  ଝୁମୁକାବାଲା
ଝୁମୁକାଟେ ତୋର ଦେ'
ମୋ କୁନି ଭଉଣୀ କଅଁଳ ମନକୁ
ସଅଳ ମନେଇ ନେ'।
ସୁନା କଣ୍ଢେଇ ମୋ' କୁନି ଭଉଣୀଟି
ରୂପାଚାନ୍ଦ ପରି ମୁହଁ
ରୁଷିଅଛି ବୋଲି ଆଖି ଯୋଡ଼ିକରୁ
ଝରିଯାଏ ତାର ଲୁହ।
ଦରୋଟି ଓଠରେ କହୁନି ସେ' କଥା
ଡାକିଲେ ଆସୁନି ଧାଇଁ
ବୁଝେଇ ବୁଝେଇ ଥକିଲାଣି ବୋଉ
ହେଲେ ସିଏ ବୁଝୁନାହିଁ ।
ସକାଳୁ ସକାଳୁ ଖେଳୁଥିଲା ଆଜି
ଅଗଣାରେ ସିଏ ବସି
ଦାଣ୍ଡଘରୁ ଆଇ ଡାକିଦେଲା ତାକୁ
'ଚେପିନାକୀ' ହସି ହସି ।
ଆଇର ଏମିତି କଥା ପଦକରେ
ଖୁସି ଗଲା ତାର ସରି
କହିଲା ସେ' 'ବାପା ଦିଅ ଘରୁ ତୁମେ
ଆଇକୁ ବାହାର କରି।'
ଶୁଣିଲେନି ବାପା କଥାକୁ ତାହାର
ଚାଲିଗଲେ ହସିଦେଇ
ସେତିକିବେଳୁ ସେ ରୁଷି ବସିଅଛି
ଲୁହ ଧାର ଯାଏ ବହି ।
ଝୁମୁକାବାଲାରେ ଝୁମୁକାବାଲା ତୁ
ଝୁମୁକାଟେ ଦେ' ତୋର
ପାଇଲେ ଝୁମୁକା ବୁଝିଯିବ ପରା
କୁନି ଭଉଣୀଟି ମୋର ।
ଲୁହଝରା ତାର ଆଖି ଦେଖି ମୁଁ ଯେ
ଜମା ସହି ପାରୁନାହିଁ
ଭଉଣୀ ସେ ମୋର ଅତି ଆପଣାର
ତା'ପରିକା କିଏ କାଇଁ ?

*ଡି/୨୦୦, କୋଏଲ ନଗର, ରାଉରକେଲା-୧୪, ସୁନ୍ଦରଗଡ଼*

--ଗେଣ୍ଡା--

# ମାଲକାନ୍‌ଗିରି ଭୈରବୀ

ପଦ୍ମାବତୀ ନାଲ୍ଲା

ମାଲକାନାଗିରି ସହରର ଐଶାନ୍ୟ କୋଣର ଅନତିଦୂରରେ ଭୈରବୀ ମନ୍ଦିର ରହିଛି। ଜୟପୁରରୁ ମୋଟୁ ବସ୍ ଯିବା ରାସ୍ତା କଡ଼ରେ ଏହି ପୀଠଟି ଥିବା ଯୋଗୁ ଗାଡ଼ି ମୋଟର ଇତ୍ୟାଦିରେ ଯାତାୟାତ କରୁଥିବା ଯାତ୍ରୀମାନେ ଶ୍ରୀ ଶ୍ରୀ ଭୈରବୀଙ୍କୁ ଦର୍ଶନ କରନ୍ତି। ଏହାଙ୍କୁ କେହି କେହି ଭୈରବ ବୋଲି ନାମିତ କରିଥାନ୍ତି; କିନ୍ତୁ ପ୍ରକୃତରେ ଏହାଙ୍କର ନାମ ଭୈରବୀ । କେଉଁ ଯୁଗରୁ ଏହାର ସୃଷ୍ଟି, ସେଥିସମ୍ବନ୍ଧେ ପ୍ରକୃତ ତଥ୍ୟ ଜଣାପଡୁ ନ ଥିଲେ ମଧ୍ୟ କେତେକ କିମ୍ବଦନ୍ତୀ ଓ ଏଠାରେ ଭଗ୍ନାବଶେଷ ଦ୍ୱାରା ଏହି ଦେବୀଙ୍କ ପୀଠର ଐତିହ୍ୟ କେତେକାଂଶରେ ଜଣାପଡ଼େ।

କଥିତ ଅଛି, ଏହି ଭୈରବୀ ମନ୍ଦିର ଉତ୍ତରପଟରେ ଥିବା ମାଲ୍ୟବନ୍ତଗିରି ସଂଲଗ୍ନ କଂକଣମାଳା ପର୍ବତ



ଉପରେ ମଧ୍ୟପ୍ରଦେଶ ତଥା ବସ୍ତର ଅଞ୍ଚଳର 'ମାଲକା ପାଇଛା' ନାମକ ଏକ ରାଜା ନିଜ ରାଜ୍ୟରୁ ବିତାଡ଼ିତ ହୋଇ ଏଠାରେ ଲୁକ୍କାୟିତ ଭାବରେ ବସତି ସ୍ଥାପନ କରୁଥିଲେ। ଏହି ଭୈରବୀ ଥିଲେ ତାଙ୍କର ଇଷ୍ଟଦେବୀ। ବାହାର ଶତ୍ରୁଙ୍କ ପ୍ରବେଶ ନ ହେବା ଲାଗି ଗଡ଼ର ଚତୁର୍ଦ୍ଦିଗରେ ସେ ପଥରର ପ୍ରାଚୀର ନିର୍ମାଣ କରାଇଥିଲେ। ତତ୍‌ସଂଗେ ସଂଗେ ରାଜନଗରରେ ଉଭୟ ପାର୍ଶ୍ୱରେ ଦୁଇଟି ସୁନ୍ଦର ସୁନ୍ଦର ସରୋବର ନିର୍ମାଣ କରାଇଥିଲେ। ନଗରର ନାମ ଥିଲା 'ଚମ୍ପକ ନଗର'। କାଳକ୍ରମେ ରାଜବଂଶର ବିଲୁପ୍ତି ଘଟିଲା। କିନ୍ତୁ ଆଜି ମୂକସାକ୍ଷୀରୂପେ ପାହାଡ଼ରେ ଥିବା ଭଗ୍ନାବଶେଷ ପ୍ରାଚୀର ପଥର, ଘୋଡ଼ାଶାଳର ଦୁଇଟି ଚିହ୍ନ, ସ୍ନାନାଗାର, କୁଟୁଣୀ ଇତ୍ୟାଦି ବିଦ୍ୟମାନ।

ପୁଣି କିଛି ବର୍ଷ ପରେ ଏହି ପାହାଡ଼ରୁ ସୁନାରୁପାର କେତେକ ଅଳଂକାର ମିଳିଥିବାର ଶୁଣାଯାଏ। ଜଣେ ଆଦିବାସୀ ବୁଢ଼ୀ କନ୍ଦା ଖୋଳିବା ଉଦ୍ଦେଶ୍ୟରେ ପାହାଡ଼କୁ ଯାଇଥିଲା। ଏହି ସମୟରେ ଏକ ସୁନାର ରୁଦ୍ରାକ୍ଷମାଳା ସେ ପାଇଥିଲା। ଏହି ସମସ୍ତ ବିଷୟକୁ ଆଲୋଚନା କଲେ ଜଣାଯାଏ ଯେ ଏଠାରେ ନିଶ୍ଚୟ ଏକ ସମ୍ଭ୍ରାନ୍ତବଂଶୀୟ ରାଜା ବସବାସ କରୁଥିଲେ। କାଳକ୍ରମେ ସ୍ଥାନୀୟ ରାଜବଂଶଧରଙ୍କ ସହ ଯୁଦ୍ଧର ସୂତ୍ରପାତ ହେବା ଯୋଗୁ ବିତାଡ଼ିତ ହୋଇ ଆସିଥିବା ରାଜାଙ୍କର ସର୍ବନାଶ ଘଟିଲା। କିନ୍ତୁ ତାଙ୍କ ପୂଜିତ ଭେରବୀ ସେହି ସ୍ଥାନରେ ପୂର୍ବ ପରି ରହିଲେ। ସ୍ଥାନୀୟ ଗିରିଜନ ଓ ଅଧିବାସୀମାନେ ସେହିଦିନରୁ ଆରାଧ୍ୟ ଦେବତା ରୂପେ ଏହାଙ୍କୁ ପୂଜାକରି ଆସିଲେ। ସେହି ପାଦଚଲା ରାସ୍ତାରେ ଯିବାବେଳେ ଦେବୀଙ୍କ ପୀଠସ୍ଥଳୀ ନିକଟରେ ଗଛର ଡାଳଟିଏ କିମ୍ବା ଛୋଟ ପଥରଟିଏ ପକାଇ ନିଜର ଭକ୍ତି ଜଣାଉଥିଲେ।

ଏହି ଭୈରବୀଙ୍କ ଶକ୍ତି ଏକ ପଥର ମଧ୍ୟରେ ନିହିତ ରହିଛି । କୌଣସି ବ୍ୟକ୍ତି ଏହାକୁ ଗଢ଼ିନାହିଁ । ସେ ଏକ ପ୍ରତ୍ୟକ୍ଷ ଦେବୀ । ଦୁଃଖୀ, ରଂକି ଓ ଅସହାୟ ବ୍ୟକ୍ତିଙ୍କର ଦୁଃଖ ମୋଚନ କରିବାରେ ମା'ଭୈରବୀଙ୍କ କରୁଣା ଅପାର । ସୁଦୂର ତୀର୍ଥସ୍ଥଳୀମାନଙ୍କରୁ ଅନେକ ଋଷି ଏହି ସ୍ଥାନକୁ ଆସି ତପସ୍ୟା କରିବାରେ ଲାଗିଲେ । 'ଯୋଗୀ ପାହାଡ଼' ତା'ର ମୂକସାକ୍ଷୀ ରୂପେ ଏଠାରେ ଦଣ୍ଡାୟମାନ । ତେବେ କେତେକ ଏହି ଦେବୀଙ୍କୁ ଭୈରବୀ ନାମକରଣ କରି ଆସିଛନ୍ତି । ଭୈରବର ଅର୍ଥ ଶିବ ଓ ଭୟଙ୍କର । ଏହି ଦେବୀଙ୍କର ଉଗ୍ର ରୂପକୁ 'ଭୈରବ' ନାମକରଣ କରାଯାଇଛି । ପ୍ରକୃତରେ ତାହାଙ୍କୁ ହିଁ 'ଭୈରବ' କୁହାଯାଏ । ଘୋର ଅରଣ୍ୟରେ ଚିରସ୍ରୋତା ନିର୍ଝର କୂଳରେ ଦେବୀଙ୍କ ପୀଠଟି ଅତ୍ୟନ୍ତ ମନୋହର । କାକ, ପିକ, ମୟୂର, ମାଂକଡ଼, ଭାଲୁ ଓ ହଂସ୍ରଜନ୍ତୁଙ୍କର ଏହା ହେଲା ନିବାସସ୍ଥଳୀ । ତଥାପି କୌଣସି ଦିନ କୌଣସି ବ୍ୟକ୍ତିଙ୍କୁ ଏଠାରେ ହଂସ୍ରଜନ୍ତୁ ଆକ୍ରମଣ କଥା ଶୁଣାଯାଏ ନାହିଁ ।

ଅନ୍ୟ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ ଜୟପୁର ମହାରାଜାଙ୍କର ବଂଶଧର ତଥା ସାମନ୍ତରାଜାମାନେ ମାଲକାନାଗିରି ଅଞ୍ଚଳରେ ରହୁଥିଲେ । ଥରେ ଏହି ଚମ୍ପକନଗର ରାଜାଙ୍କ ସହ ସେମାନଙ୍କର ବିବାଦ ସୃଷ୍ଟି ହେଲା । ତେଣୁ ବିତାଡ଼ିତ ହୋଇ ଆସିଥିବା ରାଜାଙ୍କୁ ଏହି ରାଜ୍ୟ ଛାଡ଼ି ଚାଲିଯିବାକୁ ଆଦେଶ ଦିଆଗଲା; କିନ୍ତୁ ରାଜା ତାହା ଗ୍ରହଣ କଲେନାହିଁ । ଫଳରେ ସାମନ୍ତ ରାଜମାନେ କ୍ରୋଧାନ୍ୱିତ ହୋଇ ତାଙ୍କୁ ହତ୍ୟା କରିବାକୁ ଚେଷ୍ଟା କଲେ । କିନ୍ତୁ ତାହା ପୂର୍ବରୁ ନିଜ ବଂଶର ଜଣେ ଆତତାୟୀଙ୍କ ଦ୍ୱାରା ତାଙ୍କର ମୁଣ୍ଡକାଟ ହୋଇଥିଲା । ତାଙ୍କ ପୁଅ ସେହି ମୁଣ୍ଡକୁ ଏକ ଥାଳିରେ ନେଇ ସାମନ୍ତରାଜାଙ୍କ ସଭାକୁ ଯାଇଥିଲେ । ପରେ ମୁଣ୍ଡକୁ ଆଣି ଭୈରବୀଙ୍କ ନିକଟରେ ଏକ ଉଚ୍ଚ ପଥର ଉପରେ ରଖିଦେଲେ । ଏକଥା ରାଣୀ ଶୁଣିବାମାତ୍ରେ ଶୋକାନଳରେ ଅଧୀର ହୋଇ ସତୀତ୍ୱ ରକ୍ଷା ନିମନ୍ତେ ନିକଟରେ ଥିବା ଏକ ଜଳକୁଣ୍ଡରେ ଆତ୍ମହତ୍ୟା କଲେ । ସେହି କୁଣ୍ଡଟି 'ରାଣୀ ସତୀକୁଣ୍ଡ' ନାମରେ ବର୍ତ୍ତମାନ ମଧ୍ୟ ପରିଚିତ ।

ଆସ୍ତେ ଆସ୍ତେ ରାଜବଂଶର ସମସ୍ତ ବଂଶଧର ତଥା ଚମ୍ପକ ନଗର ଧ୍ୱଂସ ହେବାକୁ ବସିଲା । ଚମ୍ପକ ନଗର ପରିବର୍ତ୍ତେ ଆଜି 'ଚମ୍ପାଖାରି' ଏକ ପଲ୍ଲୀ ତାର ପୂର୍ବ ଐତିହ୍ୟକୁ ସ୍ମରଣ କରାଏ । ଭୈରବରୂପୀ ଭୈରବୀଙ୍କ ମହିମା ଅବର୍ଣ୍ଣନୀୟ । ଆଜି ତାଙ୍କର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ବ୍ୟାପିଛି । ଅନେକ ସମୟରେ ତାଙ୍କର ମହିମା ସର୍ବସାଧାରଣଙ୍କୁ ଆଶ୍ଚର୍ଯ୍ୟ ମଧ୍ୟ କରିଦେଉଛି ।

ଗତ ପାଞ୍ଚବର୍ଷ ତଳର ଘଟଣା । ଦଶହରା ହେବାକୁ ଅଳ୍ପଦିନ ବାକି ଅଛି । ସେଦିନ ମଧ୍ୟରାତ୍ରୀ । ପୂଜାରୀ ଓ ସେବକମାନେ ନିକଟ କୁଡ଼ିଆଘରେ ଶୟନ କରିଥିଲେ । ଏହି ସମୟରେ କେହି ଜଣେ ବାହାରୁ ଆସି ମନ୍ଦିର ଭିତରକୁ ପ୍ରବେଶ କରି ଦ୍ୱାର ଖୋଲିବା ଓ ଘଣ୍ଟି ବଜାଇବା ଏମାନେ ଶୁଣିପାରିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା-- ପ୍ରଭାତରୁ ଉଠି ଦେଖିଲା ବେଳକୁ ମନ୍ଦିରକୁ ଯିବା ରାସ୍ତା ଉପରେ ଅନେକ ପାଦ ଚିହ୍ନ ପଡ଼ିଛି । ମନ୍ଦିର ସାରା ସୁଗନ୍ଧରେ ଭରପୂର ହୋଇ ଉଠୁଥାଏ । କିନ୍ତୁ ମନ୍ଦିରରୁ ଫେରିବାର ପଦଚିହ୍ନ କୌଣସିଠାରେ ପଡ଼ିନାହିଁ । ଏହା ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଲା ।

ସେହିପରି ଅନ୍ୟ ଏକ ବିଚିତ୍ର ଘଟଣା । ମାଲକାନାଗିରିରେ ବଡ଼ ଯାତ୍ରା ଚାଲିଥାଏ । ମାଉଳି ମା'

ମନ୍ଦିରରେ ହଜାର ହଜାର ଭକ୍ତ ରୁଣ୍ଡ ହୋଇ ରହିଥାନ୍ତି। ଏହି ସମୟରେ ଭୈରବୀ ମଧ୍ୟରାତ୍ରୀରେ ଏକ ଧଳା ଘୋଡ଼ା ଉପରେ ବସି ମାଉଳିଙ୍କ ନିକଟକୁ ଯାଆନ୍ତି। ଘାଘୁଡ଼ି ଓ ଘୋଟକର ପଦଶବ୍ଦ ଅନେକ ଶୁଣିଥିବା ପ୍ରବାଦ ମିଳୁଛି। ଏହିପରି ଅନେକ ଘଟଣା ରହିଛି।

ଶ୍ରୀ ଶ୍ରୀ ଭୈରବୀଙ୍କ ମହିମା ଅଲୌକିକ ଭଳି ମନେ ହୁଏ। ଆକୁଳ ଚିତ୍ତରେ ତାଙ୍କ ନାମକୁ ସ୍ମରଣ କଲେ ସେ ବିପଦ ଖଣ୍ଡନ କରନ୍ତି ବୋଲି ଲୋକଙ୍କର ବିଶ୍ୱାସ ରହିଛି। ଦଶହରା ସମୟରେ ଏଠାରେ ମେଳା ହୁଏ।

ବର୍ତ୍ତମାନ କେତେକଙ୍କ ସହାୟତାରେ ଏହି ପୀଠରେ ଏକ ଛୋଟ ମନ୍ଦିର ଗଠନ କରାଯାଇଛି। ଯାତ୍ରୀମାନଙ୍କ ନିମନ୍ତେ ଏକ ବିଶ୍ରାମସ୍ଥଳୀ ମଧ୍ୟ ନିର୍ମାଣ କରାଯାଇଛି। ପ୍ରକୃତି ରାଣୀଙ୍କ ଗନ୍ତାଘର ମଧ୍ୟରେ ଦେବୀଙ୍କ ପୀଠ ଅତ୍ୟନ୍ତ ପବିତ୍ର। ମନେହୁଏ, ପୂର୍ବ ଦିଗରେ ସତୀଗୁଡ଼ା ନଦୀ ଜଳଭଣ୍ଡାର ଦେବୀଙ୍କର ପଦଧୌତ କରିବା ପାଇଁ ସତେ ଯେପରି ଅପେକ୍ଷାରତ ! ଏଣେ ମାଲକାନାଗିରି ବାଲିସାଗର ରହିଛି । ପ୍ରତ୍ୟେକ ଏହି ଦର୍ଶନୀୟ କ୍ଷେତ୍ର ଓ ଦେବୀଙ୍କୁ ଦର୍ଶନ କରିବା ନିମନ୍ତେ ଥରେ ସେଠାକୁ ଯିବା ଉଚିତ। ମା' ଭୈରବୀ ସମସ୍ତଙ୍କର କଲ୍ୟାଣ କରନ୍ତୁ। ଓଁ ଶ୍ରୀ ଶ୍ରୀ ଭୈରବାୟ ନମଃ !

*ଲାଲ୍ ଚୌକ, ବାଲିମେଳା, ମାଲକାନଗିରି*

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର**

୧। ଆବ୍ରାହମ୍ ଲିଂକନ୍ (୬ ଫୁଟ୍ ୪ ଇଂଚ), ୨। ତାମିଲନାଡୁ, ୩। Bureau of Indian Standards, ୪। ମାସିଡୋନିଆ, ୫। କର୍ଣ୍ଣାଟକ, ୬। ନିକୋଲୋ ମାକିଆଭେଲି (Niccolo Machiavelli), ୭। ଫିରୋଜ ଶାହା ମେହେଟ୍ଟା, ୮। ପୋଲୋ, ୯। ଅକ୍ଟୋବର ୧୧ ତାରିଖ, ୧୦। ଜାହାଂଗିର।

# କ୍ରୀଡ଼ା କୁଇଜ

ଶ୍ରୀ ଶ୍ରୀନିବାସ ଖଣ୍ଡାୟତ

୧। ୧୯୯୬ରେ ପାକିସ୍ତାନର ସହିଦ୍ ଆଫ୍ରିଦି ୩୭ ବଲରେ ଶତକ ହାସଲ କରି ରେକର୍ଡ କରିଥିଲେ। ୧୮ ବର୍ଷ ପରେ ୨୦୧୪ ବର୍ଷର ପ୍ରଥମ ଦିନରେ ଏହି ରେକର୍ଡ ଭଂଗ ହୋଇଛି। ତେବେ କେଉଁ ଦେଶର ଖେଳାଳି କାହା ବିପକ୍ଷରେ, କେତେ ବଲ ଖେଳି ଏହି ଗୌରବ ଅର୍ଜନ କରିଛନ୍ତି ?

୨। ୨୦୧୪ର ବ୍ରିସବେନ୍ ଓପନ (ଟେନିସ୍) କିଏ ଜିତିଥିଲେ ?

୩। ୨୦୧୪ ଜୁନିଅର ଏସିଆ କପ୍‌ରେ କିଏ କାହାକୁ ହରାଇ ଦେଇଛି?

୪। ଦଳକୁ ଏସିଆ କପ୍ ଜିତାଇଥିବା ଭାରତୀୟ ଜୁନିଅର କ୍ରିକେଟ୍ ଦଳର ଅଧିନାୟକ କିଏ ?

୫। ଚେନାଇ ଓପନ ଟାଇଟଲ୍ କେଉଁ ଦେଶର ଖେଳାଳି ଜିତିଲେ?

୬। ବିସିସିଆଇ ଚଳିତ ବର୍ଷ 'ସିକେ ନାଇଡୁ ଲାଇଫ ଟାଇମ୍ ପୁରସ୍କାର' କାହାକୁ ପ୍ରଦାନ କରିଛି ?

୭। ୨୦୧୩ରେ 'ପଦ୍ମଭୂଷଣ' ପୁରସ୍କାର ପାଇଥିବା ଦୁଇ ଖେଳାଳିଙ୍କ ନାମ କ'ଣ ?

୮। ଓଡ଼ିଶାର ପ୍ରଥମ ଆନ୍ତର୍ଜାତିକ ମହିଳା ରଗ୍‌ବୀ ଖେଳାଳିଙ୍କ ନାମ କ'ଣ ?

*୧୬୦, ସେକ୍ଟର-୩, ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧*

*(ଉତ୍ତର ୨୪ ପୃଷ୍ଠାରେ)*

# ଭାସିଲିସାର କଣ୍ଢେଇ-୨

(ପୂର୍ବପ୍ରକାଶିତ ଉତ୍ତାରୁ)

ଶ୍ରୀ ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ

ଜଙ୍ଗଲିଆ ଜାଗା । ତା' ସାଙ୍ଗକୁ କିଟିକିଟିଆ ଅନ୍ଧାର ଯେ ପାଦ ଆଗକୁ ପଡ଼ିବା କଷ୍ଟକର । ଆହୁରି ଶୁଣିଛି ଯେ ବାବାଜଗା ମଣିଷମାନଙ୍କୁ ଦେଖିଲେ ଗୋଟା ଗିଳିଦିଏ । ଏମିତି ଅବସ୍ଥାରେ ସେ କେମିତି ଯାଇ ବାବାଜଗା ଘରୁ ଆଲୁଅ ଆଣିବ ! ଭାସିଲିସାର କଥା ଶୁଣି କଣ୍ଢେଇର ଆଖିଦୁଇଟା ଦପ୍‌ଦପ୍ ହୋଇ ଉଠିଲା । ଭାସିଲିସାକୁ ସେ ବୁଝେଇ କହିଲା, "ତୁ ଜମା ଡରନା । ମୁଁ ଯେତେବେଳ ପର୍ଯ୍ୟନ୍ତ ତୋ ପାଖେ ଅଛି, ତୋର କେହି କିଛି କରିପାରିବେନି ।"

ତା' କଣ୍ଢେଇର କଥା ଶୁଣି ଭାସିଲିସା ମନରେ ଟିକିଏ ସାହସ ଆସିଲା । ତାକୁ ଜାକିଦେଇ ଗେଲ କଲା । ଆଖିରୁ ଲୁହ ପୋଛିଦେଇ ବଢ଼େଇଲା ପାଦ ଆଗକୁ । ଅନ୍ଧାର ଯେ କିଛି ଦେଖା ଯାଉ ନ ଥିଲା । ତଥାପି କଣ୍ଢେଇ ଉପରେ ଭରସା ରଖି ଆଗକୁ ଆଗକୁ ପାଦ ବଢ଼େଇଲା ସେ । ଏତିକିବେଳେ କିଏ ଜଣେ ଧଳା ଘୋଡ଼ାରେ ଚଢ଼ି ପବନ ବେଗରେ ତା'ପାଖ ଦେଇ ଚାଲିଗଲା । ଘୋଡ଼ାଚଢ଼ାଳି ପିନ୍ଧିଥିଲା ଫିନ୍ ଫିନ୍ ଧଳା ଜାମାପଟା । ଭାସିଲିସାର ଜାମା ଭିତରୁ ତା' କଣ୍ଢେଇଟା ଚୁପ୍ ଚୁପ୍ କରି କହିଲା, "ଡରିଗଲୁ କି ଭାସିଲିସା, ଯିଏ ଧଳା ଘୋଡ଼ାରେ ଗଲା, ସିଏ ଆଉ କେହି ନୁହଁ, ସୂର୍ଯ୍ୟ ରଜା । ତା'କାମ ସାରି ଚାଲିଗଲା ପର୍ବତ ଆରପଟକୁ । ମୁଁ ପାଖରେ ଅଛି, ଡରିବୁ ନାହିଁ ।" ରାତି-ସାରା କଣ୍ଢେଇର ଭରସାରେ ଭାସିଲିସା ଚାଲିଥାଏ । କେତେବେଳେ କଣ୍ଟା କୁଦୁଥାଏ ତ କେତେବେଳେ ଖୁଣ୍ଟା ଝୁଣ୍ଟୁଥାଏ । ସିଏ କେତେବାଟ ଚାଲିଲା, ତାର ହିସାବ କିଏ ରଖିଛି ? ଏମିତି କେତେବାଟ ଗଲା ପରେ ଗୋଟାଏ ନାଲିଆ ଘୋଡ଼ାରେ କିଏ ଝପଟିଗଲା ତା' ପାଖ ଦେଇ । ଘୋଡ଼ା ଉପରେ ବସିଥିଲା ଜଣେ ଗାଢ଼ ଲାଲ୍ ପୋଷାକ ପିନ୍ଧି । ଚମକିପଡ଼ିଲା ଭାସିଲିସା ଘୋଡ଼ାର ଟାପୁ ଶବ୍ଦରେ । ତା ଜାମା ଭିତରୁ କଣ୍ଢେଇ ଫୁସ୍‌ଫୁସ୍ କରି କହିଲା, "ଘୋଡ଼ାକୁ ଦେଖି ଡରିଗଲୁ କି ? ଡରନା ମ । ସେ ପରା କଅଁଳିଆ ସୂର୍ଯ୍ୟକୁମାର ।

ଏମିତି ଯେତେ ଚାଲିଲେ ବି ବାଟ ସରୁନାହିଁ । ବାବାଜଗା ଘର କେତେ ଦୂର, ତାର ହିସାବ କିଏ ରଖିଛି? ଆହୁରି ଆଗକୁ ଆଗକୁ ପାଦ ପକେଇ ହାଲିଆ । ହଠାତ୍ ଝାପସା ଝାପସା ଅନ୍ଧାର ଭିତରେ ଦେଖାଗଲା ଗୋଟିଏ ପ୍ରକାଣ୍ଡ ଫାଟକ । ଫାଟକ ସାରା ତଳଠୁ ଯେ ଉପର ପର୍ଯ୍ୟନ୍ତ ମଣିଷ ଖପୁରୀ ମାଳ ମାଳ ହୋଇ ଖଞ୍ଜା ହୋଇଛି । ଏମିତି ଫାଟକ ଦେଖୁ ଦେଖୁ ଭାସିଲିସାର



ପାଦ ଆଉ ଆଗକୁ ଚଳିଲା ନାହିଁ । ତା ସାଂଗକୁ ଦେଖିଲା ପ୍ରକାଣ୍ଡ ପାଚେରୀ । ପାଚେରୀ ସାରା ମଣିଷଙ୍କ ହାଡ଼ ମାଳ ମାଳ ହୋଇ ଖଞ୍ଜା ହୋଇଛି । ଏସବୁ ଦେଖିଦେଇ ଭାସିଲିସାର ଛାତି ଦମ୍ ଦମ୍ ହୋଇ ପଡ଼ିଲା ଉଠିଲା । ଥମ୍ ହୋଇ ସେ ଠିଆ ହୋଇଗଲା । ଏତିକିବେଳେ ତା କଣ୍ଢେଇ ଜାମା ଭିତରୁ ଚୁପ୍ ଚୁପ୍ କରି କହିଲା, "ଡର ନାହିଁ ।" ତାକୁ ସାହସ ଦେଇ କହିଲା ଆଗକୁ ଆଗକୁ ପାଦ ପକେଇବାକୁ । କଣ୍ଢେଇର ସାହସ ପାଇ ଭାସିଲିସା ଧୀରେ ଧୀରେ ପାଦ ଆଗକୁ ବଢ଼େଇଲା; ତଥାପି ମନରୁ ଭୟ ଯାଉ ନ ଥାଏ । ଆସ୍ତେ ଆସ୍ତେ ଆସି ଫାଟକ ପାଖରେ ପହଞ୍ଚିଗଲା । ଦେଖିଲା ପାଚେରୀଟା ମଣିଷ ହାଡ଼ରେ ତିଆରି ହୋଇଛି । ଆଉ ଫାଟକଟା ବି । ଫାଟକରେ ମାଳ ମାଳ ହୋଇ ଝୁଲୁଛି ମଣିଷ ଖପୂରୀ । ଫାଟକରେ ତାଲା ପଡ଼ିଛି ମଣିଷର ମାଢ଼ି ହାଡ଼ରେ । ଦାନ୍ତକୁ ଦାନ୍ତ ବେଶ୍ ଶକ୍ତ ଭାବରେ ଯୋଖାହୋଇଛି । ଚେଷ୍ଟାକଲା ହାତରେ ଫିଟାଇବାକୁ, ପାରିଲା ନାହିଁ ।

ଏତିକିବେଳେ ଗୋଟାଏ କାଳିଆ ଘୋଡ଼ା ତା ପାଖଦେଇ ଖୁବ୍ ଜୋର୍‌ରେ ଝପଟି ଝପଟି ଚାଲିଗଲା । ସେ ଚମକି ପଡ଼ିଲା । ଦେଖିଲାବେଳକୁ କଳା କିଟିକିଟି ଜାମା ପିନ୍ଧିଥିଲା ଘୋଡ଼ାରେ ବସିଥିବା ଚଢ଼ାଳିଟି । ଜାମା ଭିତରୁ କଣ୍ଢେଇଟି ଫୁସ୍ ଫୁସ୍ କରି କହିଲା, "ଡରିଗଲୁ କି ଭାସିଲିସା? ସେ ପରା କାଳରାତି । କଳା ପୋଷାକ ପିନ୍ଧି ଘୋଡ଼ାରେ ବସି ଆସିଗଲା ରାଜୁତି କରିବାକୁ । ଏବେ ତୁ ବାବାଜଗାର ଫାଟକ ପାଖରେ ଠିଆ ହୋଇଛୁ ।"

ରାତି ହୋଇଯିବାରୁ ଫାଟକରେ ଲାଗିଥିବା ଖପୁରୀଗୁଡ଼ାକର ଆଖି କୋରଡ଼ରୁ ଦପ୍ ଦପ୍ ଆଲୁଅ ବାହାରି ଚାରିଆଡ଼ ଉଜ୍ଜ୍ୱଳ ଦେଖାଗଲା । ମାଢ଼ିର ଦାନ୍ତକୁ ଦାନ୍ତ ଘସି ହୋଇ କଟ୍ କଟ୍ ମଡ୍ ମଡ୍ ଶବ୍ଦ ବାହାରିଲା । ସତେ ଯେମିତି ତମକୁ କାଟି ଟିକ୍ ଟିକ୍ କରିଦେବ । ଡରରେ ଭାସିଲିସାର ପାଦ ଆଉ ଆଗକୁ ଝୁଂକିଲା ନାହିଁ । ସତେ ଯେମିତି ଗୋଟିଏ ପଥର ମୂର୍ତ୍ତି । ସେମିତି ଗୋଟାଏ ଜାଗାରେ ଠିଆ ହୋଇ ରହିଲା, ହଲ୍ ନାହିଁ କି ଚଲ୍ ନାହିଁ । ଏତିକିବେଳେ ହଠାତ୍ ଗୋଟାଏ ଅଜବ ଶବ୍ଦରେ ଜଂଗଲଟା ସାରା କମ୍ପିଲା । ଭାସିଲିସା ଭାବିଲା ବୋଧେ ଭୂମିକମ୍ପ ହେଉଛି । ଦେଖିଲା, କିଏ ଜଣେ ଆକାଶ ମାର୍ଗରୁ ଖସୁଛି । ବସିଛି ଗୋଟାଏ ପ୍ରକାଣ୍ଡ ହେମଦସ୍ତା ଭିତରେ । ହାତରେ ଧରିଛି ହେମଦସ୍ତାର ପୁଆଟାକୁ । ଠିଆ ହେଲା ଆସି ଫାଟକ ପାଖରେ । ଜାଣିବାକୁ ବାକି ରହିଲା ନାହିଁ ଯେ ସେ ହିଁ ବାବାଜଗା ।

ଆକାଶମାର୍ଗରୁ ବାବାଜଗା ଓହ୍ଲେଇବା ଦେଖି ଭାସିଲିସା ଟିକିଏ ଗଛ ଆଡୁଆଳରେ ଲୁଚିଯାଇଥିଲା । ଦେଖିଲା ଯେ ବାବାଜଗା ଜମା ମଣିଷ ପରି



ଦେଖାଯାଉନାହିଁ । ତା ନାକଟା ଲମ୍ବିଛି ହାତେ ଖଣ୍ଡେ । ବଡ଼ ବଡ଼ ଆଖି ଦିଇଟା କୋଉ କୋରଡ଼ ଭିତରେ ପଶିଛି ଯେ ଡୋଳାଗୁଡ଼ିକ ଭଲ ଭାବରେ ଦେଖାଯାଉନାହିଁ । ଠାକରା ଗାଲ । ଲମ୍ବ ଲମ୍ବ ଆଂଗୁଠିରେ ଲମ୍ବି ଯାଇଛି ଲମ୍ବ ନଖଗୁଡ଼ାକ । ଏମିତି ଗୋଟିଏ ଅସୁରୁଣୀକୁ ଦେଖୁ ଦେଖୁ ଭାସିଲିସାର୍ ପିଳେହିପାଣି ହେବାକୁ ବସିଲା । ବାବାଜଗା ଫାଟକ ପାଖରେ ଠିଆ ହୋଇ ପ୍ରଥମେ ଏପଟସେପଟ ଚାହିଁଲା । ତା'ପରେ ଛିଂକିଲା ପରି ହୋଇ କହିଲା, "କଅଁଳ ମାଂସର ଗନ୍ଧ । କିଏରେ!"

ଭାସିଲିସା ଦେଖିଲା ଏଠାରୁ ଖସିବା ଅସମ୍ଭବ । ମନରେ ସାହସ ବାନ୍ଧି ଚାଲିଗଲା ବାବାଜଗା ପାଖକୁ । କହିଲା, "ଆଇ ଲୋ! ମୁଁ ଭାସିଲିସା । ଜଂଗଲ ଆରପାରିରେ ଆମର ଘର । ଆମ ଘରେ ଆଲୁଅ ନାହିଁ ତ ମୋ ମା' ଓ ଭଉଣୀମାନେ ଅନ୍ଧାରରେ ବସିଛନ୍ତି । ମତେ ପଠେଇଛନ୍ତି ତୋ ଘରୁ ଆଲୁଅ ନେବା ପାଇଁ ।" ଭାସିଲିସାର କଥା ଶୁଣୁ ଶୁଣୁ ଚିହ୍ନିଲା ପରି କହିଲା, "ହଁ, ହଁ ତୋ ସାବତ ମା'ପରା ମୋ ଝିଆରୀ । ହଉ ଆସିଲୁ ଭଲ କଲୁ । ଆସିଛୁ ଯଦି ମୋ ପାଖେ ରହ । ମାତ୍ର ମୁଁ ଯାହା କହିବି, ତାହା କରିବାକୁ ହେବ । ପୁଣି ଠିକ୍ ସମୟ ଭିତରେ କରିବୁ । ତା' ନ ହେଲେ ତୋ କପାଳ ଫଟା ବୋଲି ଭାବିବୁ ।" ଏତିକି କହି ଫାଟକର ତାଲାକୁ ଡାକି କରି କହିଲା, "ଏ ତାଲା ଭିତରକୁ ଯିବି , ଖୋଲିଯା ।" ଏତିକି କହୁ କହୁ ଫାଟକରେ ମଣିଷ ମାଢ଼ି ପରି ପଡ଼ିଥିବା ତାଲା ଦିଇଟା କଟ୍ କଟ୍ ମଡ଼୍ ମଡ଼୍ ଶବ୍ଦ କରି ଅଲଗା ହୋଇଗଲା । ଫାଟକଟା ଆପେ ଆପେ କେଁ କେଁ ଶବ୍ଦ କରି ଖୋଲିଗଲା । ଫାଟକ ପାର୍ ହୋଇ ଭିତରେ ପଶିଲାବେଳକୁ ଗୋଟାଏ ବିରାଟ କଣ୍ଟାଗଛ ଥିଲା । ଗଛର ଡାଳଗୁଡ଼ାକ ସବୁ ତଳମୁହାଁ ଥିଲା । ଅଚିହ୍ନା ମୁହଁ ଦେଖୁ ଦେଖୁ ଡାଳଗୁଡ଼ାକ ଭାସିଲିସାର ଆଖିକୁ ପିଟିବା ପାଇଁ ଦୋହଲିବାକୁ ବସିଲେ । ବାବାଜଗା ଦେଖିଦେଇ ମନା କଲା । କହିଲା ସେ-- ମୋ ସାଥିରେ ଆସୁଛି । ରାତିରେ ରହିବ ମୋ ପାଖରେ ।

ତା'ପରେ ଦିହେଁ ଉଠିଗଲେ ବାରଣ୍ଡା ଉପରକୁ । ବାରଣ୍ଡା ଉପରେ ଭାସିଲିସାର ପାଦ ପଡୁ ପଡୁ ଗୋଟାଏ ମସ୍ତବଡ଼ ଭୁଆବିରାଡ଼ି ବଡ଼ ବଡ଼ ଆଖି କରି ଝପଟି ଆସୁଥିଲା ଭାସିଲିସା ଉପରକୁ । ବାବାଜଗା କହିବାରୁ ଅଟକିଗଲା । ଏତିକିବେଳେ ବାବାଜଗା ଭାସିଲିସାକୁ ଚେତେଇଦେଲା ଯେ ତା ଅନୁମତି ବିନା ସେ ବାହାରକୁ ଯାଇପାରିବ ନାହିଁ । ତା ଭୂଆଁ ବିରାଡ଼ି ଆଖି ତାଡ଼ିଦେବ । ବଳିଆ କୁକୁର କାମୁଡ଼ି ଖଣ୍ଡିଆ-ଖାବରା କରିଦେବ । ଫାଟକ ପାଖରେ ଥିବା କଣ୍ଟାଗଛର ଡାଳ ଦେହରେ ଗୁଡ଼େଇ ହୋଇଯିବେ । ଫାଟକ ଫିଟିବ ନାହିଁ ।" ଏତକ କହିସାରି ବାବାଜଗା ଘର ଭିତରେ ପଶିଗଲା । ତା'ପରେ ଡାକ ଛାଡ଼ିଲା ଖାଇବା ପାଇଁ ବାଢ଼ିବାକୁ । ତା ଡାକ ଶୁଣୁ ଶୁଣୁ ଗୋଟାଏ କଳା କିଟି କିଟି ଭୁଷୁଣ୍ଡୀ ସ୍ତ୍ରୀଲୋକ ବାବାଜଗାର ଖାଦ୍ୟ ବାଢ଼ିଦେଲା । ତା' ଖାଦ୍ୟ ଦେଖି ଭାସିଲିସାର ଆଖି ଦିଇଟା ଖୋସି ହୋଇଗଲା । ସିଝା ହୋଇଥିବା ପଶୁ ମାଂସ, ଗୋଟେ ବଡ଼ ମଗ୍‌ରେ ଦଶ ମଗ ଓଟ କ୍ଷୀର ଓ ଗୋଟା ଡ୍ରମରେ ଡ୍ରମେ ସେଓର ରସ । ବାବାଜଗା କଚ୍‌କାଚ୍ କରି ସବୁ ମାଂସତକ ଖାଇଦେଲା ପରେ ଓଟ କ୍ଷୀରତକ ପିଇଦେଲା । ତା'ପରେ ଢକ୍ ଢକ୍ କରି ଡ୍ରମ୍‌କ ସେଓ ରସ ପିଇଦେଲା । ତଥାପି ତା' ପେଟ ପୂରିଲା ନାହିଁ ଯେ ଆହୁରି ମାଗିଲା କମଳା ରସ । ତେଣୁ ଗୋଟାଏ ବଡ଼ ତସଲାରେ ତସଲେ ହେବ କମଳା ରସ ଆଣି ରଖିଦେଲା ସେ ସ୍ତ୍ରୀଲୋକଟା । ତସଲାଟା ଉଠେଇ ମୁହଁରେ ଲଗେଇ ଢକ୍ ଢକ୍ କରି ସେତକ ମଧ୍ୟ



# ଲେଖନୀର ପାଠଶାଳା

ରାମକୃଷ୍ଣ ନନ୍ଦ

୧। ନିମ୍ନ ବାକ୍ୟମାନଙ୍କରେ କେଉଁଠି ଭୁଲ୍ ଅଛି ଦେଖାଅ।

କ) ତୁମେ ସତ୍‌ପଥରେ ଚାଲିଲେ ତୁମର ଭବିଷ୍ୟତ ଉଜ୍ଜ୍ୱଳମୟ ହେବ।

ଖ) ପୂଜ୍ୟାସ୍ପଦ ଗୁରୁଜନମାନଙ୍କୁ ଭକ୍ତି କର।

ଗ) ସମ୍ମାନୀୟ ଅତିଥି ମୋତେ ଅନେକ ପ୍ରଶଂସା କଲେ।

୨। କେତେଯୋଡ଼ା ବିପରୀତାର୍ଥବୋଧକ ଶବ୍ଦର ଅକ୍ଷରକୁ ଓଲଟପାଲଟ କରି ଦୁଇଟି ସ୍ତମ୍ଭରେ ପାଖକୁ ପାଖ ଦିଆଯାଇଛି । ସେଗୁଡ଼ିକର ମୂଳରୂପ ବାହାର କର ।

| | |
|---|---|
| ଲଅସ | କଲନ |
| ହାରବା | ରତଭି |
| ଉଣିଠା | ଣିଡ଼ାଗ |
| ତନୂନ | ତରାନପୁ |

୩। ତିନୋଟି ଅକ୍ଷରକୁ ଓଲଟପାଲଟ କରି ଲେଖିଲେ, ଚାରିଟି ଭିନ୍ନ ଭିନ୍ନ ଶବ୍ଦ ହୁଏ। ନିମ୍ନଲିଖିତ ସୂଚନା ଦେଖି ଶବ୍ଦ ଚାରୋଟି ବାହାର କର। ପ୍ରତି ଶବ୍ଦରେ ସେହି ତିନୋଟି ଅକ୍ଷର ଅଛି।

ସୂଚନା-- ୧) ଗୋଟିଏ ଜଳଜନ୍ତୁ

୨) ପ୍ରକାର

୩) ଭାଗ୍ୟ

୪) ଅଣ୍ଟା

୪। ବନ୍ଧନୀ ଭିତରେ ଏପରି ଶବ୍ଦ ବସାଅ, ଯାହା ଦୁଇ ପାଖର ଅକ୍ଷର ସଂଗେ ମିଶି ଏକ ଚାରି ଅକ୍ଷର ବିଶିଷ୍ଟ ନୂଆ ଶବ୍ଦ ହେବ।

ପା (...........)ୟ

ବି (...........)କା

ଆ (...........)କୀ

ଏ (...........)ନ

୫। ଏପରି ଗୋଟିଏ ଶବ୍ଦ ବାଛ, ଯାହା ଶୂନ୍ୟ ସ୍ଥାନମାନଙ୍କରେ ବସିଲେ ପୂର୍ଣ୍ଣ ଶବ୍ଦ ତିଆରି ହୋଇଯିବ। ଏକା ଶବ୍ଦ ସବୁଥିରେ ଲାଗିବ।

............ର

ନୀ.........

ଜନ........

ହ..........ର

୬। 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ସ୍ୱର୍ଗତ.........ଙ୍କର ଆତ୍ମଜୀବନୀ ଅଟେ।

(କ) ପଣ୍ଡିତ ନୀଳକଂଠ ଦାସ

(ଖ) କାଳୀଚରଣ ପଟ୍ଟନାୟକ

(ଗ) ପଣ୍ଡିତ ଗୋଦାବରୀଶ ମିଶ୍ର

୭। 'ଚାରି ଦଉଡ଼ି କଟା'-- ଏହାର ମୂଳ କଥା ଓ ତାତ୍ପର୍ଯ୍ୟ କଣ ?

*(ଉତ୍ତର ୩୦ ପୃଷ୍ଠାରେ)*

---

ପିଇଦେଲା। ତା'ପରେ ମନେପଡ଼ିଲା ତାର ଭାସିଲିସାର କଥା। ତା' ହାତକୁ ଖଣ୍ଡେ ପାଉଁରୁଟି ବଢ଼େଇ ଦେଇ କହିଲା, '' ଏ ଖଣ୍ଡ ଖାଇସାରି ସେ ବସ୍ତାରେ ଥିବା ବାଜରାରୁ ଗୋଡ଼ି ବାଛିଦେବୁ। ଯେମିତି ଗୋଟେ ହେଲେ ବି ଗୋଡ଼ି ନ ଥିବ। ଯଦି ଗୋଟେ ଗୋଡ଼ି ମିଳିବ, ତେବେ ତତେ ପୋଡ଼ି ଗିଳିଦେବି। (ବାକି ଆରଥରକୁ)

*୭୨୮, ଲକ୍ଷ୍ମୀସାଗର, ଭୁବନେଶ୍ୱର-୬*

# କଲମ ଓ ପେନ୍‌ସିଲ୍ କଳି

ଶ୍ରୀ ରଘୁନାଥ ପାଣିଗ୍ରାହୀ



କଲମ କହେ ମୁଁ ବଡ଼ ତ
ପେନ୍‌ସିଲ୍ କହେ ମୁଁ
ଲାଗିଲା କଳି ତାଙ୍କ ଭିତରେ
ରାମୁ ମାରଇ ହୁଁ ।
କଲମ କହେ ପିଲାଠୁ ବୁଢ଼ା
ସବୁରି ହାତେ ଥାଏ
ପେନ୍‌ସିଲ୍ କହେ ସବୁ ଲେଖାରେ
ମୂଳଦୂଆ ମୁଁ ହୁଏ ।
ରବର ଲାଗି ଲିଭିଯାଏ ମୁଁ
ନୂଆ ରୂପଟି ପାଏ
ତୁ ଲିଭୁନା ଯାହା ତୁ ଥାଉ
ସଂଶୋଧନ କି ହୁଏ ?
ଚିତ୍ରକରର ପ୍ରିୟ ଅଟଇ ତୁ
ଅଲୋଡ଼ା ପଡ଼ିଥାଉ
ପିଲାଙ୍କ ହାତେ ଆଗ ମୁଁ ଆସେ
ତୁ ପଛରେ ଆସିଥାଉ ।
କଲମ କହେ ବଡ଼ ପାଟିରେ
ଭାରି ଗରବ ତୋର
ତୋ ଗରବ ଲିଭାଇଦିଏ
ରବର ଖଣ୍ଡେ ଛାର ।
ତୋ ଗାର ତ ସହଜେ ଲିଭେ
ମୁଁ କି ସହଜେ ଯାଏ ?
ରଂଗ ରୂପରେ ଜାମା ଭିତରେ
କେତେପ୍ରକାରେ ଥାଏ ।
ପେନ୍‌ସିଲ୍ କହେ ଯତନରେ ମୁଁ
କାଠ ଭିତରେ ଥାଏ
ଗ୍ରାଫାଇଟ୍‌ରେ ଗଢ଼ା ମୋ ଦେହ
ସବୁରି ଲୋଡ଼ା ହୁଏ ।
ତରଳ କାଳି ପେଟ ଭିତରେ
ଧରି ତୁ ବୁଲୁଥାଉ
କାଳି ସରିଲେ ମୁହଁ ଶୁଖାଇ
ତୁଚ୍ଛାରେ ମରିଯାଉ ।
ରାମୁ ନିଦରେ ବାଉଳା ହୋଇ
ବଡ଼ ପାଟିରେ କହେ
ଚୁପ୍ ରୁହ ହେ ଚୁପ୍ ରୁହ ହେ
କେହି ତ ବଡ଼ ନୁହେଁ ।
ଯେଉଁ କାମରେ ଯାହାର ଲୋଡ଼ା
ସେହି ତ ବଡ଼ ହୁଏ
କଳି ନ କରି ଚୁପ୍ ରୁହ
ଟିକେ ଶାନ୍ତିରେ ଶୁଏ ।

*ଗଣେଶ୍ୱରପୁର ପ୍ରକଳ୍ପ ଉଚ୍ଚ ବିଦ୍ୟାଳୟ, କମାଗଡ଼, ଯାଜପୁର ଟାଉନ-୭୫୫୦୦୧*

---

**କ୍ରୀଡ଼ା କୁଇଜର ଉତ୍ତର**

୧। ନ୍ୟୁଜିଲାଣ୍ଡ ଖେଳାଳି କୋରି ଆଣ୍ଡରସନ ୩୬ବଲରେ ଓ୍ୱେଷ୍ଟଇଣ୍ଡିଜ ବିପକ୍ଷରେ, ୨। ବିଶ୍ୱର ଏକନମ୍ବର ମହିଳା ଟେନିସ୍ ତାରକା ସେରେନା ଉଇଲିଅମସ୍, ୩। ପାକିସ୍ତାନକୁ ହରାଇ ଭାରତ, ୪। ବିଜୟ ଜୋଲ, ୫। ସ୍ୱିଜରଲାଣ୍ଡର ଷ୍ଟାନିସ୍ଲାସ ଓ୍ୱାରିଙ୍କା, ୬। କପିଲ ଦେବ, ୭। ରାହୁଲ୍ ଦ୍ରାଭିଡ୍ ଓ ସୁଶୀଲ କୁମାର, ୮। ଭାଗ୍ୟଲକ୍ଷ୍ମୀ ବାରିକ।



# ରାଜା ଓ ପ୍ରଜାପତି

ଡ଼. ପ୍ରଭାତୀ ମିଶ୍ର

ରାଜା ସୋଲମନ୍ ଏତେ ଜ୍ଞାନୀ ଥିଲେ ଯେ ସେ ପଶୁ, ପକ୍ଷୀ, ଗଛପତ୍ର ସମସ୍ତଙ୍କ ଭାଷା ବୁଝିପାରୁଥିଲେ। ତାଙ୍କ ପାଟରାଣୀ ବାଲକିଶ୍ ମଧ୍ୟ ଚତୁର ଥିଲେ। ତେଣୁ ରାଜା ମହାରାଣୀଙ୍କୁ ବହୁତ ଭଲପାଉଥିଲେ। ରାଣୀ ମଧ୍ୟ ରାଜାଙ୍କ ପ୍ରତି ଅନୁରକ୍ତ ଥିଲେ। ପୂର୍ବକାଳରେ ରାଜାମାନଙ୍କର ଉଆସରେ ବହୁତ ରାଣୀ ଥାଆନ୍ତି। ସୋଲୋମନ ରାଜାଙ୍କର ଉଆସରେ ମଧ୍ୟ ନଅଶହ ଅନେଶ୍ୱତ ରାଣୀ ଥିଲେ। ସେମାନଙ୍କ ସଂଗରେ ଦୁଇଟି ପ୍ରଜାପତି ମଧ୍ୟ ପୋଷା ହୋଇଥିଲେ। ରାଜଉଆସ ସାରା ଉଡ଼ି ଉଡ଼ି ବୁଲି ବୁଲି ପ୍ରଜାପତିଦୁହେଁ ନିଜର ସୁନ୍ଦର ରୂପ ଦେଖାଇ ଗର୍ବ କରୁଥାଆନ୍ତି। ପରସ୍ପର ମଧ୍ୟରେ କିଏ ରାଜା ଓ ରାଣୀଙ୍କର ଅତି ପ୍ରିୟ ହେବ ବୋଲି ଏକପ୍ରକାର ପ୍ରତିଯୋଗିତା ଚାଲିଥାଏ।

ରାଜା ସୋଲୋମନ ଜ୍ଞାନୀଗୁଣୀ ଭାବେ ସୁପରିଚିତ। ସେ ପ୍ରତିପତ୍ତିଶାଳୀ ଓ ବିଚାରବନ୍ତ ଶାସକ ଥିଲେ। ରାଜ୍ୟରେ ଯାହାର ଅସୁବିଧା ହେଲା, ପ୍ରଜାମାନଙ୍କ ମଧ୍ୟରେ ବାକ୍‌ବିତଣ୍ଡା ଚାଲିଲେ ରାଜା ସୋଲୋମନ ସହଜରେ ଜଟିଳ ପରିସ୍ଥିତିକୁ ସମାଧାନ କରୁଥିଲେ। ତାଙ୍କ ଅନ୍ତଃପୁରରେ ରାଣୀମାନଙ୍କ ମଧ୍ୟରେ କଳହ ଲାଗିଥାଏ। ରାଜାଙ୍କ ନିକଟବର୍ତ୍ତୀ ହେବା ଉଦ୍ଦେଶ୍ୟରେ ସେମାନେ ପରସ୍ପର ମଧ୍ୟରେ ବାଦ ଲଗାଇଥାନ୍ତି।

ସେମାନଙ୍କର ମନୋମାଳିନ୍ୟ ଦେଖି ରାଜା ବଡ଼ ଅସନ୍ତୁଷ୍ଟ ଥିଲେ। ସେ ଯାଦୁବିଦ୍ୟାରେ ପାରଙ୍ଗମ ଥିଲେ। ସେ ଇଚ୍ଛା କରିଥିଲେ ତାଙ୍କ ଯାଦୁବଳରେ ରାଣୀମାନଙ୍କ କଳହ ଦୂର କରି ପାରିଥାଆନ୍ତେ। କିନ୍ତୁ ଜନସାଧାରଣଙ୍କ ନିକଟରେ ତାଙ୍କ ଗୁପ୍ତ ବିଦ୍ୟାକୁ ପ୍ରଘଟ ନ କରିବାକୁ ସେ ବିଚାର କଲେ।

ଦିନେ ସେ ରାଣୀମାନଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହୋଇ ଶାନ୍ତି ଲାଭ କରିବା ନିମନ୍ତେ ପ୍ରାସାଦ ନିକଟସ୍ଥ ବଗିଚା ମଧ୍ୟରେ ଚାଲି ଚାଲି ଯାଉଥିବା ବେଳେ ରାଜା ହଠାତ୍ ଦୁଇଟି କଳହରତ ପ୍ରଜାପତିଙ୍କ ଉପରେ ପାଦ ପକାଇବାକୁ ଯାଉଯାଉ ରହିଗଲେ। ସେ ଶୁଣିଲେ ପୁରୁଷ ପ୍ରଜାପତି ତା' ସ୍ତ୍ରୀକୁ ଭର୍ତ୍ସନା କରୁଥାଏ। ସେ ଧମକାଇ କହିଲା, "ଦେଖ ମୁଁ ଯଦି ମୋ'ପାଦ ଭୂମି ଉପରେ ବାଡ଼େଇଦେବି, ଏ ରାଜଉଆସର ସମଗ୍ର ବଗିଚା କୁଆଡ଼େ ଉଭେଇଯିବ ଓ ମୋ ସହ କଳହରତ ଥିବାରୁ ତତେ ଦଣ୍ଡ ମିଳିବ।" ରାଜାଙ୍କୁ ଦେଖି ପ୍ରଜାପତି ତାଙ୍କ ସମର୍ଥନ ଲାଭ କରିବାକୁ ପ୍ରୟାସ କଲା। ରାଜା ଦୁଇ ପ୍ରଜାପତିଙ୍କ କଳହକୁ ଆନନ୍ଦରେ ଉପଭୋଗ କଲେ। ସେ କହିଲେ, "ହଁ, ହଁ ମୁଁ ତମ କଥାରେ ଏକମତ। ମୁଁ ତୁମକୁ ଏ ଦିଗରେ ସାହାଯ୍ୟ କରିପାରିବି।"

ତେଣେ ରାଣୀ ବାଲକିସ୍ ମାଈ ପ୍ରଜାପତି ସଂଗେ କଥା ହୋଇ ନାରୀମାନଙ୍କ ପ୍ରତି ପୁରୁଷଜାତିର ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କଲେ। ରାଣୀ ପ୍ରତିଯୋଗିତା ଆହ୍ୱାନ ଗ୍ରହଣ କଲେ। ସେ କହିଲେ, "ଦେଖାଯାଉ, ପ୍ରଜାପତି ତାର ପାଦକୁ ଭୂମି ଉପରେ

ଥାପୁ, କିପରି ପ୍ରାସାଦଟି ଉଭେଇଯିବ , ପ୍ରଜାପତି ମିଛ କହୁଛି । ତାର କଥାରେ ସତ୍ୟତା ଆଜି ଜଣାଯିବ ।"

ମାଇ ପ୍ରଜାପତି ରାଣୀଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇ ତା' ସ୍ୱାମୀଙ୍କୁ ତା' ଶକ୍ତି ପରୀକ୍ଷା କରିବାକୁ ଆହ୍ୱାନ ଦେଲା । କିନ୍ତୁ ପୁରୁଷ ପ୍ରଜାପତି ଛଳନା ସହ କହିଲା, "ନାଁ ନାଁ ରାଜା ମୋତେ ନିଷେଧ କରିଛନ୍ତି ଏପରି ଦୁର୍ଘଟଣା ନ ଘଟାଇବାକୁ ।" ସ୍ତ୍ରୀ ତାକୁ ବାଧ୍ୟ କରିବାରୁ ସେ ରାଜାଙ୍କ ପାଖକୁ ଗଲେ । ରାଜା ତାଙ୍କ ସ୍ତ୍ରୀମାନଙ୍କୁ ଶାସନରେ ରଖିବା ପାଇଁ ଭୂମି ଉପରେ ପାଦ ଥାପିବାକୁ ଅନୁମତି ପ୍ରଦାନ କଲେ । ରାଜା ନିଜ ଯାଦୁବିଦ୍ୟା ପ୍ରୟୋଗ କରି ମାଇ ପ୍ରଜାପତିକୁ ଶିକ୍ଷା ଦେବା ନିମନ୍ତେ ରାଜପ୍ରାସାଦ ଓ ଏହାର ଉଦ୍ୟାନକୁ ଉଡ଼ାଇଦେବାକୁ ପରୀମାନଙ୍କୁ ନିର୍ଦ୍ଦେଶ ଦେଲେ ।

ଯେମିତି ପ୍ରଜାପତି ସଜୋରେ ଭୂମିରେ ଆଘାତ ଦେଲା, ସଂଗେ ସଂଗେ ପ୍ରାସାଦଟି ଉଭେଇଗଲା । ମାଇ ପ୍ରଜାପତି ଭୟରେ ଥରହର ହେଲା । ପ୍ରାସାଦ ନାହିଁ କି ସୁନ୍ଦର ବଗିଚା ନାହିଁ । ସେ ଅନୁତାପ କରି ସ୍ୱାମୀଙ୍କ ପାଖରେ ପ୍ରତିଜ୍ଞାବଦ୍ଧ ହେଲା ଯେ ଏପରି ଭୁଲ୍ ସେ ଜୀବନ ଥିବା ଯାଏ କରିବ ନାହିଁ ।

ସୋଲୋମନ ରାଜା ଦାମ୍ପତ୍ୟ କଳହ ଏତେ ସୁବିଧାର ତୁଟିଗଲା ଦେଖି ହସିଲେ ।

ରାଣୀମାନେ ଦେଖିଲେ ପ୍ରାସାଦ ନାହିଁ କି ଉଆସର ସୁନ୍ଦର ବଗିଚାଟି ନାହିଁ । ସେମାନେ ପ୍ରମାଦ ଗଣିଲେ, କେଉଁଠି କାହାର ଭୁଲ୍ ରହିଗଲା କି ? ସେମାନେ ଆଶଙ୍କା କଲେ ରାଜାଙ୍କର ମୃତ୍ୟୁ ହୋଇଗଲା କି? ସ୍ୱର୍ଗର ଅଧିବାସୀମାନେ ରାଜାଙ୍କ ବିୟୋଗରେ ମ୍ରିୟମାଣ ହୋଇ ଏପରି ଦୁଃଖ ପ୍ରକାଶ କରୁଛନ୍ତି କି ? ଏପରି ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ରହି ସେମାନେ ଅଶାନ୍ତି ପାଉଥାଆନ୍ତି ।

ବାଲକିସ ଏହି ଅସନ୍ତୁଷ୍ଟ ରାଣୀମାନଙ୍କୁ ବୁଝାଇ-ଦେଲେ ଯେ ପ୍ରଜାପତି ଦମ୍ପତ୍ତିଙ୍କ କଳହ ଭାଂଗିବାକୁ ଯାଇ ରାଜ୍ୟର କେତେ ବଡ଼ କ୍ଷତି ହେଲା । ସୁନ୍ଦର ବଗିଚାଟି ନଷ୍ଟ ହୋଇଗଲା । ତେଣୁ ତାଙ୍କ ରାଣୀମାନେ ପରସ୍ପର ମଧ୍ୟରେ କଳହରତ ରହିଲେ କେତେ କ୍ଷୟକ୍ଷତି ସଂଘଟିତ ନ ହେବ!

ରାଜା ପ୍ରଜାପତିକୁ ଆଉଥରେ ତା' ପାଦରେ ଭୂମିକୁ ପ୍ରହାର କରିବାକୁ କହିଲେ । ତା'ପରେ ରାଜ ଉଆସ ଓ ଉଦ୍ୟାନ ପୁଣି ସୁଶୋଭିତ ହୋଇ ବିରାଜମାନ କଲା ।

ଏ ନାଟକର ଯବନିକା ପତନ ହେଲା ଯେତେବେଳେ ମୁଖ୍ୟ ନାୟିକା ମହାରାଣୀ ରାଜାଙ୍କୁ ବୁଝାଇଲେ ତାଙ୍କର ସୁଚିନ୍ତିତ ସଂଯୋଜନା, ନିର୍ଦ୍ଦେଶନା ଯୋଗୁ ଏକ ମସ୍ତବଡ଼ ସମାଧାନର ସୂତ୍ର ବାହାରିଲା । ଏକଥା ରାଜା ଜାଣି ବହୁତ ଖୁସି ହେଲେ । ସେ ମହାରାଣୀଙ୍କ ବୁଦ୍ଧିକୁ ପ୍ରଶଂସା କଲେ ।

(ଇଂରେଜ ଲେଖକ ରୁଡ଼ିଆର୍ଡ କିପ୍‌ଲିଙ୍ଗଙ୍କ ଗଳ୍ପ The Butterfly that Stampedର ଛାୟାରେ ଲିଖିତ ।)

*ପ୍ରଣବାଳୟ, ମହାନଦୀ ବିହାର, କଟକ*





# ପିଲାଏ ଜାଣିବା ପାଇଁ ରୋଗ (ଜ୍ୱର)

ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ

ଦେହରେ ହାତ ମାରିଦେଲେ ଯଦି ହାତକୁ ଉଷୁମ୍ ଲାଗେ, ସମସ୍ତେ କହନ୍ତି-- ଜ୍ୱର ହୋଇଛି। ତୁମେ ହୁଏତ ଭାବୁଥିବ ଯେ ଜ୍ୱର ହେଉଛି ଗୋଟିଏ ରୋଗ; କିନ୍ତୁ ପ୍ରକୃତରେ ତାହା ଠିକ୍ ନୁହେଁ। ଜ୍ୱର ହେଉଛି କୌଣସି ରୋଗର ଏକ ଲକ୍ଷଣମାତ୍ର। ସାମାନ୍ୟ ଶର୍ଦ୍ଦି, ଥଣ୍ଡାଠାରୁ ଆରମ୍ଭ କରି ନିମୋନିଆ, ଯକ୍ଷ୍ମା, ଟାଇଫଏଡ୍, ମ୍ୟାଲେରିଆ, ଫାଇଲେରିଆ, ମିଳିମିଳା, ହାଡ଼ଫୁଟି, କ୍ୟାନସର ତଥା ଏଡସ୍ ପରି ପ୍ରତ୍ୟେକ ରୋଗରେ ପ୍ରାୟ ଜ୍ୱର ହୋଇଥାଏ। ତେବେ ରୋଗ ଭେଦରେ ଏହି ଜ୍ୱରର ରୂପ ଅଲଗା ଅଲଗା ହୋଇଥାଏ।

## ଜ୍ୱର କହିଲେ କଣ ବୁଝାଏ ?

ତୁମେ ଜାଣିଥିବ ଆମ ଦେହରେ ଏକ ନିର୍ଦ୍ଦିଷ୍ଟ ତାପମାତ୍ରା ଅଛି। ସେଥିପାଇଁ ଦେହକୁ ଛୁଇଁଲେ ସବୁବେଳ ପାଇଁ ଉଷୁମ ଲାଗିଥାଏ। ଆମ ଦେହରେ ସ୍ୱାଭାବିକ ତାପମାତ୍ରା ହେଉଛି ୯୮.୪ ଡିଗ୍ରୀ ଫାରେନ୍‌ହିଟ୍ ବା ୩୭ ଡିଗ୍ରୀ ସେଲିସିଅସ୍। ଆମ ଚାରିପଟର ତାପମାତ୍ରା ଯେତେ ବଢ଼ିଲେ ବା କମିଲେ ମଧ୍ୟ ଦେହର ତାପମାତ୍ରାରେ ବିଶେଷ କିଛି ପରିବର୍ତ୍ତନ ହୁଏନାହିଁ। କାରଣ ଦେହର ତାପମାତ୍ରାକୁ ନିୟନ୍ତ୍ରଣ କରିବା ପାଇଁ ମସ୍ତିଷ୍କରେ ଏକ ତାପ-ନିୟନ୍ତ୍ରଣ କେନ୍ଦ୍ର ରହିଛି। ଯେତେବେଳେ ଏହି କେନ୍ଦ୍ର ଉତ୍ତେଜିତ ହୋଇଯାଏ, ଦେହର ତାପମାତ୍ରା ବଢ଼ିଯାଏ। ଦେହର ତାପମାତ୍ରା ସ୍ୱାଭାବିକ ଠାରୁ ଅଧିକ ହୋଇଗଲେ ଆମେ ତାକୁ 'ଜ୍ୱର' ବୋଲି କହୁ।

## ପ୍ରକୃତରେ ଜ୍ୱର ହୁଏ କାହିଁକି ?

ଜ୍ୱର ହେଉଛି ଆମ ଦେହର ଏକ ପ୍ରାକୃତିକ ପ୍ରତିକ୍ଷେପ କ୍ରିୟା। ତୁମେ ଜାଣିଛ, ଆମ ଦେହରେ ଏକ ପ୍ରତିରକ୍ଷା ଶକ୍ତି ରହିଥାଏ। ଯେତେବେଳେ ବାହାରର କୌଣସି ରୋଗ ଜୀବାଣୁ, ଭୂତାଣୁ ଆଦି ଦେହରେ ପଶି ରୋଗ ସୃଷ୍ଟି କରିବାକୁ ଚେଷ୍ଟା କରନ୍ତି । ଆମ ଦେହର ପ୍ରତିରକ୍ଷା ଶକ୍ତି ସେମାନଙ୍କ ସହିତ ସଂଗ୍ରାମ କରେ। ଏହି ସଂଗ୍ରାମରେ ପ୍ରତିରକ୍ଷା ଶକ୍ତି ଜିତିଗଲେ ଆମକୁ ଆଉ ରୋଗ ହୁଏନାହିଁ। କିନ୍ତୁ ପ୍ରତିରକ୍ଷା ଶକ୍ତି ହାରିଯାଇ, ରୋଗ ଜୀବାଣୁ, ଭୂତାଣୁ ଇତ୍ୟାଦି ଜିତିଗଲେ, ଆମେ ରୋଗର ଶିକାର ହୋଇଥାଉ। ଏହି ରୋଗ ପ୍ରଭାବରେ ଆମକୁ ଜ୍ୱର ହୋଇଥାଏ। ତା'ଛଡ଼ା ଏହି ସଂଗ୍ରାମ ଯୋଗୁ ଯେଉଁ-ସବୁ କୋଷ ନଷ୍ଟ ହୋଇଯାନ୍ତି, ସେମାନଙ୍କଠାରୁ ଏକ ବିଷାକ୍ତ ଉପାଦାନ ସୃଷ୍ଟି ହୋଇଥାଏ। ଏହାକୁ 'ଫାଇରୋଜୋନ୍' ବୋଲି କୁହାଯାଏ। ଏହା ମସ୍ତିଷ୍କର ତାପକେନ୍ଦ୍ରକୁ ଉତ୍ତେଜିତ କରେ। ଫଳରେ ଆମ ଦେହର ତାପମାତ୍ରା ବଢ଼ିଯାଏ ଓ ଆମକୁ ଜ୍ୱର ହୁଏ। 'ଫାଇରୋଜେନ୍' ଜ୍ୱରର କାରଣ ହୋଇଥିବା ହେତୁ ଡାକ୍ତରୀ ଭାଷାରେ ଜ୍ୱରକୁ 'ଫାଇରେକ୍ସିଆ' ବୋଲି କହାଯାଏ।

## ଦେହରେ ଜ୍ୱର ଅଛି ବୋଲି ଜାଣିବ କେମିତି ?

ତୁମ ହାତ ପାପୁଲିର ପଛପଟ ଦ୍ୱାରା କପାଳ, ବେକ, ଗାଲ, ପିଠି କିମ୍ବା ପେଟକୁ ଛୁଇଁଲେ ଯଦି ଗରମ

ଅନୁଭବ କରିବ, ତା'ହେଲେ ଜାଣିବ ଯେ ଜ୍ୱର ହୋଇଛି। ତା'ଛଡ଼ା ପ୍ରକୃତରେ ଦେହର ତାପମାତ୍ରା କେତେ ଅଛି, ତାହା ଠିକ୍ ଭାବରେ ଜାଣିବା ପାଇଁ ଏକ ଯନ୍ତ୍ର ବ୍ୟବହାର କରାଯାଏ। ଏହାକୁ 'ଜ୍ୱର ତାପମାନ ଯନ୍ତ୍ର' ବା 'କ୍ଲିନିକାଲ ଥର୍ମୋମିଟର' କୁହାଯାଏ। ଜ୍ୱର ମାପିବା ପାଇଁ ଦୁଇପ୍ରକାର ମାନକବିଶିଷ୍ଟ ଯନ୍ତ୍ର ବ୍ୟବହାର ହୋଇଥାଏ। ଗୋଟିଏ ହେଲା 'ଫାରେନହିଟ୍' ମାନକ ଓ ଅନ୍ୟଟି ହେଲା 'ସେଲସିୟସ' ମାନକ। ତେବେ ଜ୍ୱର ମାପିବା ପାଇଁ ଫାରେନହିଟ ମାନକକୁ ହିଁ ବହୁଳ ଭାବରେ ବ୍ୟବହାର କରାଯାଇଥାଏ। ଜିଭ ତଳେ, କାଖ ଖୋଲରେ, ଜଂଘ ସନ୍ଧିରେ କିମ୍ବା ମଳଦ୍ୱାର ଭିତରେ ତାପମାନ ଯନ୍ତ୍ରକୁ ରଖି ତାପମାତ୍ରା ନିର୍ଣ୍ଣୟ କରାଯାଏ। ଏହା ଖୁବ୍ ସହଜ। ଠିକ୍ ଭାବରେ ଶିଖିପାରିଲେ ତୁମେ ମଧ୍ୟ ଏହା କରିପାରିବ।

## କେତେ ପ୍ରକାରର ଜ୍ୱର ହୁଏ ?

ତାପମାତ୍ରାର ପରିମାଣକୁ ନେଇ ଜ୍ୱରର ପ୍ରକାରଭେଦ କରାଯାଇଥାଏ। ତୁମେ ଜାଣିଛ, ଆମ ଦେହର ସ୍ୱାଭାବିକ ତାପମାତ୍ରା ହେଉଛି ୯୮.୪ ଡିଗ୍ରୀ ଫାରେନହାଇଟ୍। ୯୮.୪ରୁ ୧୦୧ ଭିତରେ ରହିଲେ ସାମାନ୍ୟ, ୧୦୧ରୁ ୧୦୩ ଭିତରେ ରହିଲେ ମଧ୍ୟମ ଧରଣର, ୧୦୩ରୁ ୧୦୬ ଭିତରେ ରହିଲେ ସାଂଘାତିକ ଏବଂ ୧୦୬ରୁ ଅଧିକ ହେଲେ ଅତି ସାଂଘାତିକ ଜ୍ୱର ବୋଲି କୁହାଯାଏ।

ଏହା ବ୍ୟତୀତ ଦିନ ଭିତରେ ଦେହରେ ରହୁଥିବା ତାପମାତ୍ରାର ଗତି ଓ ପ୍ରକୃତିକୁ ବିଚାର କଲେ ମଧ୍ୟ ଜ୍ୱର ବିଭିନ୍ନ ପ୍ରକାର ନାମକରଣ କରାଯାଇଥାଏ। ଯେଉଁ ଜ୍ୱରରେ ଦେହର ତାପମାତ୍ରା ଦିନକ ଭିତରେ ଦେଢ଼ଡିଗ୍ରୀ ଫାରେନହିଟ୍ ଭିତରେ କମ୍ ବେଶି ହୁଏ, ତାହାକୁ 'ଅବିରାମ ଜ୍ୱର' ବୋଲି କୁହାଯାଏ । ଟାଇଫଏଡ୍ ଓ ନିମୋନିଆ ପରି ରୋଗରେ ଏହିପ୍ରକାର ଜ୍ୱର ହୁଏ । ଯେଉଁ ଜ୍ୱରରେ ଦିନ ଭିତରେ ଦେହର ତାପମାତ୍ରା ଦେଢ଼ ଡିଗ୍ରୀରୁ ଅଧିକ କମ୍ ବେଶୀ ହୁଏ, ତାହାକୁ 'ସ୍ୱଳ୍ପ ବିରାମ ଜ୍ୱର' ବୋଲି କୁହାଯାଏ। ଆଉ କେତେକ ଜ୍ୱର ଅଛି, ଯେଉଁଥିରେ ଜ୍ୱର ଦିନ ଭିତରେ କିଛି ଘଣ୍ଟା ପାଇଁ ଛାଡ଼ିଯାଇ ଦେହର ତାପମାତ୍ରା ସ୍ୱାଭାବିକ ହୋଇଥାଏ। ତା'ପରେ ପୁଣି ଜ୍ୱର ଆସେ। ଏ ପ୍ରକାର ଜ୍ୱରକୁ 'ସବିରାମ ଜ୍ୱର' କୁହାଯାଏ । ମ୍ୟାଲେରିଆ ଓ ବାତଜ୍ୱର ପରି ରୋଗରେ ଏ ପ୍ରକାର ଜ୍ୱର ହୁଏ। ଦିନର ଏକ ନିର୍ଦ୍ଦିଷ୍ଟ ସମୟରେ କିମ୍ବା ଦିନେ ଦୁଇଦିନ ଛଡ଼ାରେ ଜ୍ୱର ଆସୁଥିଲେ ତାକୁ 'ପାଳିଜ୍ୱର' ବୋଲି କୁହାଯାଏ । ମ୍ୟାଲେରିଆର ଏହା ଏକ ନିର୍ଦ୍ଦିଷ୍ଟ ଲକ୍ଷଣ। ଯେଉଁ ଜ୍ୱର କୌଣସି ନିୟମ କାନୁନ୍ ମାନେ ନାହିଁ, ତାହାକୁ 'ଅନିୟମିତ ଜ୍ୱର' ବୋଲି କୁହାଯାଏ। କ୍ୟାନସର, ଏଡସ୍ ପରି ରୋଗରେ ଏହିପରି ଜ୍ୱର ହୁଏ । (ଆଉକିଛି ଆରଥରକୁ)

*ନିମନ୍ତ୍ରଣ, ୮୯-ଶକ୍ତି ନଗର, ଲିଙ୍କ୍ ରୋଡ୍, କଟକ-୧୨*

ବୟସ ହୋଇଗଲେ ଅଭିନେତ୍ରୀଟିଏ ଯେତେ ରୂପସଜ୍ଜାରେ ଜଡ଼ି ରହିଲେ ମଧ୍ୟ କ'ଣ ପୂର୍ବ ସୌନ୍ଦର୍ଯ୍ୟ ଫେରିଆସିବ? ସେ ସାଧାରଣ ମଣିଷ ହେଉ ବା ଅପ୍‌ସରୀ ହେଉ ବା ଅଭିନେତା/ଅଭିନେତ୍ରୀ ହେଉ, ସମୟ ତା' ବାଟରେ ଆଗେଇଯିବ ।



# ମଧୁପ୍ରିୟ ମହର୍ଷି

ଶ୍ରୀ ମୀନକେତନ ସାହୁ

ନୈମିଷା ନାମକ ଏକ ପ୍ରାଚୀନ ଅରଣ୍ୟ । ସେଠାରେ ବାସ କରୁଥିଲେ ଜଣେ ମହର୍ଷି । ଯୁବା ବୟସ ତାଙ୍କରି । ନାମହୀନ ସେ । କୌଣସି ନାମ ଧାରଣ କରି ନ ଥିଲେ ମୁନିବର । ପଚାରିଲେ କହୁଥିଲେ, "ନାମର କ'ଣ ବା ଆବଶ୍ୟକତା ? ପଶୁପକ୍ଷୀ ତ ନାମଯୁକ୍ତ ନୁହନ୍ତି । ବୃକ୍ଷଲତାର ନାମ ନାହିଁ ; ତଥାପି ସେମାନେ ସୁଖରେ ବାସ କରନ୍ତି । ମୁଁ ତ ମାନବମାତ୍ର । ତେଣୁ ମୋର ମଧ୍ୟ କୌଣସି ନାମ ଆବଶ୍ୟକ ନୁହେଁ ।"

ଋଷିଙ୍କ କର୍ମ ଥିଲା ମାଧୁର୍ଯ୍ୟପ୍ରଦାନ । ପ୍ରତ୍ୟେକଙ୍କୁ ମଧୁର ଫଳ, ମଧୁର ଗୀତ, ମଧୁର ହସ, ମଧୁର ଦୃଶ୍ୟ ଆଦି ପ୍ରଦାନ କରିବାକୁ ସେ ସର୍ବଦା ଯତ୍ନଶୀଳ ଥିଲେ ।

ଥରେ ସେହି ଅନାମିକ ଋଷି ଦୀର୍ଘକାଳ ପର୍ଯ୍ୟନ୍ତ ତପସ୍ୟାରତ ହେଲେ । ଶ୍ରୀ ବିଷ୍ଣୁଙ୍କ ସ୍ମରଣ ଓ ଧ୍ୟାନରେ ସେ ସଦା ଆସକ୍ତ ଥିଲେ । କୌଣସି ସ୍ଥାନରେ ଉପବେଶନପୂର୍ବକ ସମାଧିଲୀନ ହୋଇଗଲେ ।

ଅତୁଳନୀୟ ତପସ୍ୟା ତାଙ୍କର । ସମାଧି ଅବସ୍ଥାରେ ନିଶ୍ଚଳ, ନିଷ୍କମ୍ପ । ତେଣୁ କୌଣସି ସ୍ଥାନରୁ ଆସିଗଲେ ପଲେ ମଧୁମକ୍ଷିକା । ସେସବୁ ଋଷିଙ୍କ ସମଗ୍ର ଶରୀରରେ ରଚନା କଲେ ମଧୁକୋଷ । ସ୍କନ୍ଧ, ଜାନୁ, ମସ୍ତକ, ଊରୁ ଆଦି ଶରୀରରେ ପ୍ରତିଟି ଅଂଗ ମଧୁକୋଷଭରା । କୋଷଗୁଡ଼ିକ ମଧୁପୂର୍ଣ୍ଣ । ଋଷିପ୍ରବର ମଧୁକୋଷସମୂହର ଏକ ପାହାଡ଼ର ଆକାର ପ୍ରାପ୍ତ ହେଲେ ।

ମଧୁକୋଷ ସବୁର ଭାରରେ ଋଷିଙ୍କ ସମାଧି ଭଂଗ ହେଲା । ଋଷି ହେଲେ ଅସ୍ୱସ୍ତଚିତ୍ତ । ଶ୍ରୀବିଷ୍ଣୁଙ୍କ ଉଦ୍ଦେଶ୍ୟରେ କହିଲେ, "ହେ ଦେବ, ଏକାଗ୍ରଚିତ୍ତରେ ଆପଣଙ୍କ ଧ୍ୟାନ କରିବାକୁ ମୋର ଅଭିପ୍ରାୟ । କିନ୍ତୁ ଏହି ମଧୁମକ୍ଷିକାନିଚୟ ମୋର ମନୋଯୋଗ ଭଂଗ କରୁଛନ୍ତି । ମୁଁ କଣ କରିବା ଉଚିତ?" ସେତେବେଳେ ଶ୍ରୀବିଷ୍ଣୁ ସହାସ୍ୟ ବଦନରେ ବ୍ୟକ୍ତ କଲେ, "ଧ୍ୟାନ ନିମିତ୍ତ ଗୋଟିଏ ସ୍ଥାନରେ ହିଁ ସ୍ଥିର ଭାବରେ ଉପବେଶନ କରି ରହିବା ଉଚିତ-- ଏପରି କିଛି ମାନେ ନାହିଁ । ଭ୍ରମଣଶୀଳ ଅବସ୍ଥାରେ ମଧ୍ୟ ଧ୍ୟାନରେ ନିମଗ୍ନ ରହିପାର । ଏଣୁ ଏବେଠୁ ସଂଚରଣଶୀଳ ହୋଇ ମୋର ଧ୍ୟାନ କର । ମଧୁମକ୍ଷିକାମାନଙ୍କର ଦଂଶନ ଏହି ଉପାୟରେ ଦୂରୀଭୂତ ହୋଇପାରିବ ।" ଋଷି ହୃଷ୍ଟଚିତ୍ତ ହେଲେ । ସେହି ମୁହୂର୍ତ୍ତରୁ ହିଁ ସେ ଧ୍ୟାନ ଆରମ୍ଭ କଲେ ଭ୍ରମଣଶୀଳ ଅବସ୍ଥାରେ ।

ମାଧୁର୍ଯ୍ୟଦାନ ପ୍ରିୟ ସେହି ମହାନ୍ ସାଧୁ ଭୂଲୋକରେ ସଦାସର୍ବଦା ଭ୍ରମଣରତ ରହିଲେ । ଏକ ସୂକ୍ଷ୍ମ କଳେବର ଧାରଣ କରି ଋଷି ସଂଚରଣ କଲେ । ସମଗ୍ର ଭୂମଣ୍ଡଳ ତାଙ୍କର ଭ୍ରମଣସ୍ଥଳ । ଯେଉଁ ଯେଉଁଠାରେ ତାଙ୍କର

ଉପସ୍ଥିତି ଘଟେ, ସେଠାରେ ବୃକ୍ଷରାଶି ପଲ୍ଲବିତ ହୁଅନ୍ତି, ପୁଷ୍ପିତ ହୁଅନ୍ତି। ବନପ୍ରଦେଶରେ ସମ୍ପାଦିତ ହୋଇଥାଏ ବିଭିନ୍ନ ବର୍ଣ୍ଣିଳ ମହୋତ୍ସବ। ବିଭିନ୍ନ ଗନ୍ଧର ପ୍ରସାର ଘଟିଥାଏ। ମଧୁମକ୍ଷିକାଗୁଡ଼ିକର ଅବିରତ ଗୁଂଜନ, ଭ୍ରମରମାନଙ୍କ ସଂଗୀତ, କୋକିଳବର୍ଗର କୂଜନ ଆଦିର ଆବିର୍ଭାବ ଘଟେ। ବସ୍ତୁତଃ ସେ ଯେତେବେଳେ ଆସନ୍ତି, ଲୋକେ କହନ୍ତି, "ବସନ୍ତ ଋତୁର ଆଗମନ ହେଲା।" ସମଗ୍ର ପୃଥିବୀର କୋଣ ଅନୁକୋଣରେ ମଧୁପ୍ରିୟ୍ ଆଚାର୍ଯ୍ୟ ଅନବରତ ଭ୍ରମଣ କରନ୍ତି । ତାଙ୍କରି ଆଗମନରେ ମହିରୁହ ସ୍ପନ୍ଦିତ ହୁଅନ୍ତି, ଖଚର ସ୍ପନ୍ଦିତ ହୁଅନ୍ତି। ସ୍ପନ୍ଦନ ଘଟେ ଭ୍ରମର ଓ ମଧୁମକ୍ଷିକାଙ୍କର।

ଏହିପରି ମାଧୁର୍ଯ୍ୟ ଯୋଗୁଁ ସେହି ମହାନ୍ ଋଷି 'ମଧୁପ୍ରିୟ୍' ନାମରେ ପ୍ରଖ୍ୟାତ ହେଲେ।

(ସଂସ୍କୃତ ପତ୍ରିକା 'ସଂଭାଷଣ ସଂଦେଶଃ'ର 'ମଧୁପ୍ରିୟ୍ ମହର୍ଷିଃ' ଲେଖାର ଆଧାରରେ)

*ମାର୍ତ୍ତଣ୍ଡ ଅଧ୍ୟକ୍ଷ, ବୁର୍ଲା, ପୋ.ଅ- ବୁର୍ଲା, ସମ୍ବଲପୁର*

**ଲେଖନୀର ପାଠଶାଳାର ଉତ୍ତର-** ୧। କ) ବ୍ୟାପ୍ତି ଅର୍ଥରେ ବିଶେଷ୍ୟ ପରେ 'ମୟ୍' ବସେ। ଯଥା-- ଜଳମୟ୍, ଜ୍ୟୋତିର୍ମୟ୍ ଇତ୍ୟାଦି। 'ଉଜ୍ଜ୍ୱଳ' ବିଶେଷଣ ପଦ, ତେଣୁ ସେଥିରେ ମୟ୍ ଲାଗିବ ନାହିଁ। କେବଳ 'ଉଜ୍ଜ୍ୱଳ' ହେବ। ଖ) 'ଆସ୍ପଦ' ଅର୍ଥ ପାତ୍ର; ଶ୍ରଦ୍ଧାର ପାତ୍ର ଶ୍ରଦ୍ଧାସ୍ପଦ, ପୂଜାର ପାତ୍ର ପୂଜାସ୍ପଦ; ପୂଜ୍ୟାସ୍ପଦ ନୁହେଁ। (ପୂଜ୍ୟ ଅର୍ଥ-- ପୂଜା ଯୋଗ୍ୟ)। ଗ) ମାନ୍ + ଅନୀୟ୍ = ମାନନୀୟ୍। ଏହା ପୂର୍ବରୁ 'ସମ୍' ଉପସର୍ଗ ଯୁକ୍ତ ହେଲେ ସମ୍ + ମାନନୀୟ୍ = ସମ୍ମାନନୀୟ୍ ହେବ। 'ଯୋଗ୍ୟ' ଅର୍ଥରେ 'ଅନୀୟ୍' ପ୍ରତ୍ୟୟ ହୁଏ, 'ଇୟ୍' ନୁହେଁ।

୨। ଅସଲ - ନକଲ, ବାହାର - ଭିତର, ଉଠାଣି - ଗଡ଼ାଣି, ନୂତନ - ପୁରାତନ

୩। ମକର, କମର, ରକମ, କରମ ୪। କାଶ, ସୂଚି, ମଳ, କତା

୫। ରବ, ୬। (ଗ) ୭। ପରିବାର, ସମାଜ, ସରକାର ଓ ଭଗବାନ-- ଏ ଚାରିହେଁ ଯେପରିକି ମନୁଷ୍ୟକୁ ସଂସାରରେ ବାନ୍ଧି ରଖିଛନ୍ତି। ମାତ୍ର ଯେ ଏ ଚାରିଙ୍କି ଭ୍ରୂକ୍ଷେପ ନ କରେ, ତାକୁ 'ଚାରି ଦଉଡ଼ି କଟା' କହନ୍ତି। **

---

## ଅଛି-ନାହିଁ

ଚିତ୍ର ଦୁଇଟି ମଧ୍ୟରେ ଅତି କମ୍‌ରେ ୬ଟି ପ୍ରଭେଦ ଅଛି । ବାହାର କରନ୍ତୁ ତ । (ଉତ୍ତର ୩୮ ପୃଷ୍ଠାରେ)

# ଭାବେ ନାହିଁ ଜ୍ଞାନୀ ଲୋକଟି

ଶ୍ରୀ ରମାକାନ୍ତ ବେହେରା



ଖରା ନଇଁଗଲା ସଞ୍ଜ ଆସିଗଲା
ମାଆ କୋଳେ ବସି ସୂରୁଯ
ମନରେ ପକାନ୍ତି କେଉଁଠି ହଜିଲା
ସକାଳ ମୋ ବୁଣା ମୁରୁଜ ।
ମଥାକୁ ନୁଆଁଇ ବାଡ଼ି ଖଣ୍ଡେ ଧରି
ଜେଜେ ଚାଲୁଥାନ୍ତି ଥିଇରି
ଭାବି ହେଉଥାନ୍ତି ଭେଣ୍ଡିଆ ବୟସ
କିଏ ନେଲା ମୋ'ଠୁ ଓଟାରି ।
ପୂନେଇଁର ଜହ୍ନ ଭାବୁଛି କାଲି ମୁଁ
ଥିଲି ଗୋଟେ ରୂପାଥାଳିଆ
ଆଜି ରୂପ ମୋର ଦିଶୁନାହିଁ ପରା
ଜଗତକୁ କାଲି ଭଳିଆ ।



ଗଛଟି ଭାବୁଛି ବରଷା ବସନ୍ତେ
ଦିଶୁଥିଲି କେଡ଼େ ସୁନ୍ଦର
ନଣ୍ଡା କରିଦେଲା ଏଇ ଗିରୀଷମ
କି ଦୋଷ କଲି ମୁଁ ତାହାର ।



ସବୁକୁ ହରାଇ ସଭିଏଁ ଭାବନ୍ତି
ଭାବେନାହିଁ ଜ୍ଞାନୀ ଲୋକଟି
ଜ୍ଞାନ ତା' ହଜେନି, ଜ୍ଞାନ ତା' ଲୁଚେନି
ଜ୍ଞାନ ତା' ପଡ଼େନି ଝଡ଼ିଟି ॥

*ଭଣ୍ଡାରି ପୋଖରୀ, ଜି- ଭଦ୍ରକ-୭୫୬୧୨୦* 

---






- ❖ ଯେତେ ଜୀବିତପ୍ରାଣୀ ଏ ସଂସାରରେ ଅଛନ୍ତି, ତା'ର ୧୦ଭାଗରୁ ୯ଭାଗ ସମୁଦ୍ରରେ ବାସ କରୁଛନ୍ତି ।
- ❖ ଅତି ଉଚ୍ଚରେ ଥିବା ଉଡ଼ାଜାହାଜ ଅବତରଣ ପଡ଼ିଆରେ ରନ୍‌ୱେ ଲମ୍ବା ରହେ, କାରଣ ସେଠାରେ ବାୟୁର ଚାପ କମ୍ ଥାଏ ।
- ❖ ଶରୀରର ଏକମାତ୍ର ଅଙ୍ଗ ଦାନ୍ତ, ଯିଏ କି ନିଜକୁ ନିଜେ ସଜାଡ଼ି ପାରେନାହିଁ ।

# ପିମ୍ପୁଡ଼ିପ୍ରିୟ ଉଦ୍ଭିଦ

ଶ୍ରୀ ପ୍ରତାପ କିଶୋର ମହାନ୍ତି

ବୈଜ୍ଞାନିକ ଓ ପ୍ରଫେସର ଶ୍ରୀ ଚମତ୍କାର୍ ଚମ୍ ଚମ୍ ତାଙ୍କ ପୁତ୍ର ଓ ଶିଷ୍ୟ ଶ୍ରୀ ବିସ୍ମୟ୍ ବମ୍ ବମ୍‌କୁ ସଂଗରେ ଧରି ପ୍ରାତଃଭ୍ରମଣ କରୁଥିବା ସମୟରେ ସେମାନଙ୍କର ଦୃଷ୍ଟି ଆକର୍ଷଣ କଲା ଗୋଟିଏ ଉଗ୍ରଭାବାପନ୍ନ ନାଲି ପିମ୍ପୁଡ଼ିର ଧାଡ଼ି। ସେମାନେ ସେହି ଧାଡ଼ିକୁ ଅନୁସରଣ କରି ଦେଖିଲେ ପ୍ରତି ପିମ୍ପୁଡ଼ି ତା ଆଗ ପିମ୍ପୁଡ଼ିକୁ ଶୁଂଘି ଓ ଚିହ୍ନି ତାକୁ ଅନୁସରଣ କରୁଛି। ଏସବୁ ମୂଳରେ ସେମାନଙ୍କ ଅଂଗରୁ ନିର୍ଗତ ଏକପ୍ରକାର ରାସାୟନିକ ଦ୍ରବ୍ୟ (Fermone) ଅଛି, ଯାହା ସେମାନଙ୍କୁ ପରସ୍ପର ଚିହ୍ନିବାରେ ସାହାଯ୍ୟ କରୁଛି। ପ୍ରଫେସର ଶ୍ରୀ ଚମ୍ ଚମ୍ କହିଲେ, "ବମ୍ ବମ୍ ଦେଖ, ଏ ପିମ୍ପୁଡ଼ିମାନେ କ୍ଷୁଦ୍ରକୀଟ ହେଲେ ମଧ୍ୟ ପୃଥିବୀରେ ବହୁ ପୁରାତନ କାଳରୁ (ଡାଇନାସୋର ଆଗରୁ) ବିଦ୍ୟମାନ। ଏମାନେ ବଡ଼ ପରିଶ୍ରମୀ, ବୁଦ୍ଧିମାନ୍ ଓ ସୁଶୃଙ୍ଖଳ କୀଟ। ଏମାନଙ୍କର ବଳ ହେଲା-- ସେମାନଙ୍କର ଗୋଷ୍ଠୀଗତ ଜୀବନ-ଶୈଳୀ। ଗୋଟିଏ କ୍ଷୁଦ୍ରକୀଟ ଯାହା ଏକାକୀ କରିପାରେ ନାହିଁ, ତାହା ଏକସମୟରେ ହଜାର ହଜାର ପିମ୍ପୁଡ଼ି ଆକ୍ରମଣ କରି ବଡ଼ ବଡ଼ ପଶୁପକ୍ଷୀମାନଙ୍କୁ କାବୁ କରି ଶିକାର କରିପାରନ୍ତି।" ସେମାନେ ପିମ୍ପୁଡ଼ି ଧାଡ଼ିକୁ ଅନୁସରଣ କରି ଶେଷରେ ଗୋଟିଏ ଜାମୁକୋଳି ଗଛ ନିକଟରେ ପହଞ୍ଚିଲେ। ସେହି ପିମ୍ପୁଡ଼ିଗୁଡ଼ିକ ସେହି ଜାମୁକୋଳି ଗଛର ଗୋଟିଏ ଖୋଲରେ ବସା କରି ରହିଛନ୍ତି। ପ୍ରଫେସର କହିଲେ, "ଜାମୁକୋଳି, ଆମ୍ବ, ଲିଚୁ, ପିଜୁଳି ଇତ୍ୟାଦି ବୃକ୍ଷର ବକଳ ତଳେ ପିମ୍ପୁଡ଼ିମାନେ ବାସକରନ୍ତି ଏବଂ ଏ ବୃକ୍ଷଗୁଡ଼ିକୁ ବାହ୍ୟ ଆକ୍ରମଣରୁ ରକ୍ଷାକରନ୍ତି। କେତେକ ସାରୁଜାତୀୟ ଗଛର ମାଟି ତଳେ ଥିବା କନ୍ଦାର କିଛି ଅଂଶରେ ବିପଜ୍ଜନକ ପିମ୍ପୁଡ଼ିଙ୍କର ବାସସ୍ଥଳୀ ଥିବା ଯୋଗୁ କେହି ଏଗୁଡ଼ିକୁ ସହଜରେ ଖୋଳି ବାହାର କରିପାରନ୍ତି ନାହିଁ। ବମ୍ ତୁମେ ଜାଣିଛ, ଦକ୍ଷିଣ ଆମେରିକାରେ ଦେଖାଯାଉଥିବା ପିମ୍ପୁଡ଼ିପ୍ରିୟ ଆକାସିଆ ବୃକ୍ଷ (Acacia Sphaero-Cephala) ର ଯୌଗିକ ପତ୍ରର ବୃନ୍ତମୂଳରେ ଦ୍ୱିପକ୍ଷକ ଯୌଗିକ ପତ୍ର ଥିବା କଣ୍ଟକସଦୃଶ ଦୁଇ ଅବପତ୍ର (Stipules) ଫମ୍ପା ଅଟନ୍ତି। ଏଗୁଡ଼ିକ ପିମ୍ପୁଡ଼ିମାନଙ୍କର ବାସସ୍ଥଳୀ। ତାହା ସଂଗେ ସଂଗେ ଏ ପତ୍ରଗୁଡ଼ିକର ଅଗ୍ରଭାଗରେ ପିମ୍ପୁଡ଼ିମାନଙ୍କ ନିମିତ୍ତ ଖାଦ୍ୟଦ୍ରବ୍ୟ ବେଲ୍‌ଟଙ୍କ ଥଳି (Bells's Corpuscles)ରେସଞ୍ଚିତ ହୋଇ ରହିଥାଏ। ତେଣୁ ପିମ୍ପୁଡ଼ିମାନେ ଆଶ୍ରୟ ଓ ଖାଦ୍ୟ ବଦଳରେ ବୃକ୍ଷଟିକୁ ବାହ୍ୟ ଆକ୍ରମଣରୁ ରକ୍ଷା କରନ୍ତି।" ଏମିତି ଜ୍ଞାନଗର୍ଭକ କଥା କହୁ କହୁ ପ୍ରଫେସର ଓ ଶିଷ୍ୟ ଦୁହେଁ ଘରମୁହାଁ ହେଲେ।

*ଦେଉଳସାହି (ସାଇ ମନ୍ଦିର ସମ୍ମୁଖ), ତୁଳସୀପୁର, କଟକ-୮*

# ଧର୍ମ ବଡ଼ ନା ଜ୍ଞାନ ବଡ଼

ଶ୍ରୀ ରବୀନ୍ଦ୍ର କୁମାର ମହାପାତ୍ର

ଅନେକ ଦିନ ତଳର କଥା । ଚନ୍ଦ୍ରନଗରର ଜମିଦାର ଥିଲେ ପ୍ରବୋଧ କର୍ମା । ସେ ଥିଲେ ପ୍ରଜା-ବତ୍ସଳ । ଲୋକମାନଙ୍କର ମଙ୍ଗଳ ପାଇଁ ସର୍ବଦା ତତ୍ପର ଥିଲେ । ତେଣୁ ଲୋକମାନେ ତାଙ୍କୁ ଅତ୍ୟନ୍ତ ଭଲପାଉଥିଲେ । ବେଳେବେଳେ ଅଦ୍ଭୁତ ଖିଆଲ ତାଙ୍କ ମୁଣ୍ଡକୁ ଜୁଟୁଥିଲା ।

ଥରେ ତାଙ୍କ ମନରେ ପ୍ରଶ୍ନ ଉଙ୍କିମାରିଲା-- ଧର୍ମ ବଡ଼ ନା ଜ୍ଞାନ ବଡ଼ । ପଣ୍ଡିତମାନଙ୍କୁ ପଚାରି କିଛି ଉତ୍ତର ପାଇପାରିଲେ ନାହିଁ । ଚନ୍ଦ୍ରନଗରଠାରୁ ଚାରିକୋଶ ଦୂରରେ ଜଣେ ସିଦ୍ଧ ତପସ୍ୱୀଙ୍କ ଆଶ୍ରମ । ପ୍ରବୋଧ କର୍ମା ସେହି ଆଶ୍ରମକୁ ଧାଇଁଲେ । ତପସ୍ୱୀଙ୍କ ଶାନ୍ତସରଳ ହସ ହସ ମୁହଁକୁ ଦେଖି ତାଙ୍କୁ ଖୁସି ଲାଗିଲା । ତପସ୍ୱୀ ମହାରାଜ କର୍ମାଙ୍କୁ ଆଶ୍ରମର ଜଳାଶୟରେ ଧୋଇଧାଇ ହୋଇ ଆସିବାକୁ କହିଲେ । ଜମିଦାର କର୍ମା ଧୋଇଧାଇ ହୋଇ ଆଶ୍ରମର ଅଗଣାରେ ବସିଲେ । ତପସ୍ୱୀ ଆଶ୍ରମରେ ଫଳୁଥିବା ଫଳଗୁଡ଼ିଏ ସହ ସରାଏ କ୍ଷୀର ଆଣି ଦେଲେ । କର୍ମା ମହାଶୟ ତାକୁ ଖାଇ ଆତ୍ମତୃପ୍ତି ଲାଭ କଲେ । ତପସ୍ୱୀଙ୍କୁ ତାଙ୍କ ପ୍ରଶ୍ନର ଉତ୍ତର ପାଇଁ ଜିଜ୍ଞାସା କଲେ । ତପସ୍ୱୀ ମହାରାଜ "ହଉ ଉତ୍ତରଦେବା" କହି କର୍ମାଙ୍କୁ କିଛିଦିନ ଆଶ୍ରମରେ ରହିବାକୁ କହି ପୂଜାପାଠରେ ମଗ୍ନ ରହିଲେ । ଏପରି ଭାବରେ ଦୁଇ ମାସ କଟିଗଲା । ନିଜ ପ୍ରଶ୍ନର ଉତ୍ତର ନ ପାଇ ପୁଣି ମହାରାଜାଜୀଙ୍କୁ ପୁଚ୍ଛା କଲେ । ତପସ୍ୱୀ କହିଲେ, "ଧର୍ମ ବଡ଼ ନୁହେଁ କି ଜ୍ଞାନ ବଡ଼ ନୁହେଁ ।" ଜମିଦାରଙ୍କ ମନ ଦୁଃଖ ହେଲା । ସେ ଆଶ୍ରମରୁ ଫେରି ଆସିବାକୁ ଅନୁମତି ମାଗିଲେ ।

ହଠାତ୍ ଏତିକିବେଳେ ଘରପୋଡ଼ିରୁ ଉଦ୍ଧାର କରିଥିବା ଜଣେ ଲୋକକୁ ଧରି ଚାରିଜଣ ଗ୍ରାମବାସୀ ଆଶ୍ରମ ନିକଟକୁ ଅଗ୍ରସର ହେଲେ । ତପସ୍ୱୀ ମହାରାଜ ଲୋକଟିକୁ ଚାଞ୍ଚରାରେ ଶୁଆଇଦେଇ ପୋଡ଼ିଯାଇଥିବା ସ୍ଥାନରେ କରଞ୍ଜ ତେଲ ଲଗାଇଲେ । ବିଶଲ୍ୟକରଣୀ ପତ୍ର ବାଟି ଅଧିକ କ୍ଷତ ସ୍ଥାନରେ ଲଗାଇଲେ । ବିଭିନ୍ନ ଔଷଧ ବୃକ୍ଷରାଜିର ପତ୍ର ବାଟି ମଲମ ତିଆରି କରିବାକୁ ଜମିଦାରଙ୍କୁ କହିଲେ । ଜମିଦାର ମହାରାଜଜୀଙ୍କ ପାଖେ ପାଖେ ରହି ସାହାଯ୍ୟ କଲେ । ଏକ ଧର୍ମାନୁଷ୍ଠାନରୁ ନିମନ୍ତ୍ରଣ ପାଇ କର୍ମା ମହାଶୟଙ୍କୁ ରୋଗୀଟିର ଦାୟିତ୍ୱ ଦେଇ ୭/୮ ଦିନ ପାଇଁ ତପସ୍ୱୀ ବାହାରକୁ ଗଲେ ।

ଜମିଦାର ଖୁବ୍ ଯତ୍ନ ଓ ନିଷ୍ଠାର ସହ ସେହି ପୋଡ଼ିଯାଇଥିବା ଲୋକଟିର ସେବା ଚିକିତ୍ସା କଲେ ଓ ଲୋକଟି ଜମିଦାରଙ୍କ ଚିକିତ୍ସା ଲାଭ କରି ସୁସ୍ଥ ହେଲେ । ମହାରାଜଜୀ ଫେରିଆସିଲେ ଓ କର୍ମାଙ୍କର ନିଃସ୍ୱାର୍ଥ ସେବା ଦେଖି ଖୁବ୍ ଖୁସି ହେଲେ ଓ ଆଶୀର୍ବାଦ କରି କହିଲେ



# ସଂସାର

ଶ୍ରୀ ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ

ସୋନା ଓ ମୋନା ଦୁଇଭଉଣୀ ସନ୍ଧ୍ୟାରେ ଠାକୁର ଘରେ ପ୍ରାର୍ଥନା ସାରି ଗପଟିଏ ଶୁଣିବା ଲାଗି ଜେଜେଙ୍କ ପାଖରେ ଆସି ହାଜର ହୋଇଗଲେ । ଜେଜେ ନାତୁଣୀଦୁହିଙ୍କୁ ଦେଖି ଖୁବ୍ ଖୁସି ହୋଇଗଲେ। ଜେଜେ କହିଲେ, "ଆଜି କେଉଁ ଗପ ଶୁଣିବ?" ସୋନା କହିଲା, "ଗତକାଲି ଆମ ପଡ଼ିଶା ଘରେ ତୁମୁଳ କଳିକନ୍ଦଳ ଶାଶୁ ଓ ବୋହୂଙ୍କ ଭିତରେ ଲାଗିଥିଲା। ଫଳରେ ପଡ଼ିଶା ଲୋକମାନେ ମଧ୍ୟ ଗତକାଲି ସୁସ୍ଥ ପରିବେଶରେ ରହି ପାରି ନ ଥିଲେ। ତେବେ ଗୋଟିଏ ଘର ଭିତରେ ଏପରି କାହିଁକି ହୁଏ ?"

ଜେଜେ କହିଲେ, "ଆଜିକାଲିକା ବୋହୂ, କିନ୍ତୁ ଶାଶୁମାନେ ହେଲେ ଆଗ କାଳର ସ୍ତ୍ରୀ ଲୋକ। ତେଣୁ ଦୁଇଟି ସମୟ ଭିତରେ ମତ ଭିନ୍ନ ହେବାର ଦେଖାଗଲେ, ସେଇଠି ପ୍ରଥମେ ମତାନ୍ତର ଓ ମନାନ୍ତର ଦେଖାଯାଏ। ଫଳରେ ସାମାନ୍ୟ କଥାରେ ବି ଦୁଇଜଣଙ୍କର ଭିତରେ ମତ ବିଭେଦ ହେବା କଥା । ତେବେ ଆଜି ଏହି ବିଷୟରେ ଗପଟିଏ ଶୁଣ।

ଥରେ ମା' କପୋତୀଟିଏ ଗୋଟିଏ ବଡ଼ ଗଛ ଡାଳରେ ବହୁ କଷ୍ଟରେ ବସାଟିଏ ବାନ୍ଧିଥିଲା ଏବଂ ସେହି ବସାଟିରେ ମା' କପୋତୀଟିର ତିନିଗୋଟି ଅଣ୍ଡା ଥିଲା। ବହୁ ଯତ୍ନରେ ମା' କପୋତୀ ସେହି ଅଣ୍ଡାଗୁଡ଼ିକର ଦେଖାଶୁଣା କରେ । କ୍ରମେ ସେ ଦେଖିଲା ଯେ କିଛିଦିନ ପରେ ସେହି ତିନିଗୋଟି ଅଣ୍ଡା ମଧ୍ୟରୁ ସର୍ବପ୍ରଥମ ଅଣ୍ଡାଟି ଫୁଟିଲା ଓ ସେହି ଅଣ୍ଡାରୁ ଛୁଆଟିଏ ବାହାରିଲା । ପ୍ରଥମ ଛୁଆଟିକୁ ଦେଖି ମା' କପୋତୀଟି ବହୁତ ଖୁସି ହୋଇଗଲା। କ୍ରମେ ଅନ୍ୟ ଦୁଇଟି ଅଣ୍ଡାରୁ ମଧ୍ୟ ଛୁଆ ଫୁଟି ବାହାରିଲା। ଛୁଆ ତିନୋଟିକୁ ଦେଖି ମା' ଭୀଷଣ ଖୁସି ହେଲା। ତା'ସାଥୀ ପକ୍ଷୀଟି ପାଖରେ ଘୁମୁରି ଘୁମରି କେତେ ଖୁସି ଗପ କରେ। କ୍ରମେ ପ୍ରଥମ ଛୁଆଟିର ରୁମ ଉଠିଲା। ଟିକି ଟିକି ଡେଣା ବି ଲାଗିଲା। ମା' କପୋତୀଟି ନିଜେ ନ ଖାଇ ତା' ପିଲାଙ୍କ ପାଇଁ ଆହାର ଆଣି ଥଣ୍ଟରେ ଥଣ୍ଟ ଲଗାଇ ଆହାର ଦେଲା।

ଏବେ ତା' ବଡ଼ପୁଅଟି ଟିକିଏ ସିଆଣିଆ ହୋଇ ଆସୁଛି। ତା'ଡେଣାରେ ଟିକ ଟିକି ନୂଆ ପର ଉଠିଲାଣି। କିଛି ଦିନ ପରେ ଟିକିଏ ଟିକିଏ ଖଣ୍ଡିଉଡ଼ା ଦେଉଛି। ଯେଉଁଦିନ ସେ ଖଣ୍ଡିଉଡ଼ା ଦେଇ ବସାରୁ ଉଡ଼ି ଡାଳରେ ବସିଲା, ମା' କପୋତୀଟି ଖୁସିରେ ତା' ସାଥୀଟିକୁ ଡାକି ଦେଖାଇଦେଲା ଯେ 'ଆମ ପୁଅ କିପରି ଉଡ଼ି ଶିଖିଲାଣି।' କ୍ରମେ ତା' ବଡ଼ପୁଅଟି ଧୀରେ ଧୀରେ ତଳକୁ ଓହ୍ଲାଇ ନିଜେ ପୋକଜୋକ ଖାଇବାକୁ ଚେଷ୍ଟା କଲା। ପୁଅଟି ତା'ମା'କୁ ଦେଖାଇଦେଲା ଯେ ସେ ନିଜେ ଆହାର ସଂଗ୍ରହ କରିପାରୁଛି। ମା' ଏହା ଦେଖି ଖୁସିରେ କଜଳପାତିକୁ

---

--ଜମିଦାର ମହାଶୟ ! ଆପଣଙ୍କ ଉତ୍ତର ତ ପାଇ-ସାରିଲେଣି । ଏବେ ଆପଣ ଚନ୍ଦ୍ର ନଗର ଫେରିଯାଇ ପ୍ରଜାମାନଙ୍କର ଦୁଃଖସୁଖ ବୁଝନ୍ତୁ ।" କର୍ମା ଆଶ୍ଚର୍ଯ୍ୟ ହୋଇ କହିଲେ, "ଆଜ୍ଞା ! ମୁଁ କିପରି ମୋର ଉତ୍ତର ପାଇଲି ?"

ତପସ୍ୱୀ ମହାରାଜ କହିଲେ, "ଆପଣ ଯେଉଁ ନିଃସ୍ୱାର୍ଥ ସେବା କରି ଲୋକଟିକୁ ବଞ୍ଚାଇଲେ, ତାହାଠାରୁ ଆଉ କିଛି ବଡ଼ କାର୍ଯ୍ୟ ଏ ଜଗତରେ ନାହିଁ। ତେଣୁ ଧର୍ମ ବଡ଼ ନା ଜ୍ଞାନ ବଡ଼, ଆପଣ ହିଁ କୁହନ୍ତୁ !

*ଇ-୨୬୩, ୟୁନିଟ୍- ୮, ଭୁବନେଶ୍ୱର-୧୨* **

ଦେଖାଇ କହିଲା, ''ମୋ' ପୁଅ ଏରୁଣ୍ଡିବନ୍ଧ ଡେଇଁ ଶିଖିଲାଣି।'' ପକ୍ଷୀମାନଙ୍କ ଭିତରେ କଜଳପାତିଟି ତ 'କଜଳପାତିଆ ଭଦ୍ରଲୋକ'। ସେ କପୋତୀକୁ ଦେଖାଇ କହିଲା, ''କେତେ ଫୁଲେଇ ହଉଛୁ; ଏବେ ତ ଏରୁଣ୍ଡି ଡେଇଁଛି, ଯେବେ ଲଙ୍କା ଡେଇଁବ, ସେ ତୋ ବୋଲରେ ନ ଥିବ।'' ମା' କପୋତୀଟି କହିଲା, ''ମୋ ପୁଅ ସେପରି ନୁହେଁ। ମୋ କଥାରୁ ସେ କେବେ ବାହାରି ଯିବନାହିଁ।''

ଦିନ ଗଡ଼ି ଚାଲିଲା। ପୁଅ କପୋତୀଟି ମା'କୁ କହି ସର୍ବଦା ବାହାରକୁ ଉଡ଼ିଯାଏ। କିଛି ସମୟ ଉଡ଼ି ବସାକୁ ଫେରିଆସେ। ସେତେବେଳକୁ ମା' ମନେ ମନେ ଫୁଲିଉଠେ ଏବଂ ଭାବେ ପୁଅଟି ମୋର ବଡ଼ ସୁଧାର। ମା'କୁ କିଛି ନ କହି ସେ କରେନାହିଁ। ଦିନେ ଦିନେ ଉଡ଼ିଯାଏ। ଦିନ ବୁଡ଼ିବା ଆଗରୁ ପୁଣି ବସାକୁ ଫେରେ। ମା' ଓ ତା'ର ଅନ୍ୟ ଭାଇ ଭଉଣୀଙ୍କ ସହିତ ବସାରେ କେତେ ସୁଖଦୁଃଖ ହୁଏ।

ଦିନକର କଥା। ପୁଅ କପୋତଟି ମା'କୁ କହି ବହୁଦୂରକୁ ଉଡ଼ିଗଲା। ଦିନ ବଢ଼ିଲା, ଖରା ବି ବଢ଼ିଲା। କ୍ରମେ ବେଳ ବି ବୁଡ଼ିଲା। ହେଲେ ପୁଅ କପୋତଟି ଆଉ ଫେରିଲା ନାହିଁ । ମା' ମନ ଛନଛନ। ଜହ୍ନକୁ ଦେଖି ଜୁହାର ହୋଇ କହେ, ''ରେ ଜହ୍ନ ! କାଲି ସକାଳୁ ଫେରିଆସୁ ମୋ ଧନ।'' ସତକୁ ସତ ପୁଅ କପୋତଟି ପରଦିନ ସକାଳରେ ଫେରିଆସିଲା। ଆଉ ଦିନେ ତା'ପୁଅ କପୋତଟି ସକାଳ ସୂରୁଯ ଦେଖି ମା'କୁ କହି ଉଡ଼ିଗଲା ଦୂରକୁ। ମା'ର ଆଖି ଉହାଡ଼ରେ ଲୁଚି ବି ଗଲା ତା' ପୁଅ। ମା'କପୋତୀଟି ଠାକୁରଙ୍କୁ ଡାକି କହୁଥାଏ, ''ହେ ଠାକୁରେ ! ମୋ ପୁଅକୁ ଫେରାଇ ଆଣିବ।''

ଏଥର ପୁଅ କପୋତଟି ଉଡ଼ିଗଲା ପରେ ଆଉ କେତେଦିନ ପରେ ବି ଫେରିଲା ନାହିଁ। ମା'କପୋତୀଟି ଘୁମୁରି ହେଉଥାଏ। ତା'ଦୁଃଖ କହିଲେ ନ ସରେ। ମା'କପୋତୀଟି ଅଧୀର ହୋଇ ଗୋଟିଏ ଶୁକପକ୍ଷୀକୁ କହିଲା, ''ହେ ଶୁକପକ୍ଷୀ! ତମେ ତ ଜ୍ଞାନୀ। ମୋ ପୁଅ ଖବର ଟିକିଏ ଦେବ କି ?'' ଶୁକ ପକ୍ଷୀଟି କିଛି ସମୟ ଚିନ୍ତା କରି କହିଲା, ''ବ୍ୟସ୍ତ ହୁଅନା। ସେ ଭଲରେ ଅଛି। କିଛି ଶୁଭ ଖବର ନେଇ ଫେରିବ।''

ସତକୁ ସତ ପୁଅଟି କିଛି ଦିନ ପରେ ତା' ସାଥୀ ପକ୍ଷୀଟିଏ ଧରି ଫେରିଲା। ଏଥର ମା'ର ଦୁଃଖ କହିଲେ ନ ସରେ। କପୋତୀ କହିଲା, ''ରେ ପୁଅ ! କେଉଁ ଅଜଣାଅଶୁଣାକୁ ସାଥୀ କରି ଆଣିଲୁ। ମୁଁ କେତେ ଆଶା କରିଥିଲି ସୁନାନାକୀ ବୋହୂଟିଏ ଆଣିଥା'ନ୍ତି। ମୋର ସବୁ ଆଶା ଭଣ୍ଡୁରୁ କରିଦେଲୁ। ତୋ'ସାଥୀଟିକୁ ମୁଁ ବୋହୂ ବୋଲି ଗ୍ରହଣ କରିପାରିବିନି।'' ପୁଅର ସାଥୀ କପୋତୀଟି ମା'



କପୋତୀଟିକୁ ଯେତେ ନେହୁରା ହେଲା, ମା' କପୋତୀଟି ଶୁଣିଲା ନାହିଁ। କିଛି ଦିନ ପରେ ଶାଶୁବୋହୂ କଥା ପଦାରେ ପଡ଼ିଲା। ଅନ୍ୟମାନେ ଯେତେ ବୁଝାଇଲେ ମା' କପୋତୀଟି ବୁଝୁ ନ ଥାଏ।

ଶେଷରେ କପୋତୀଟି ନିରୁପାୟ ହୋଇ ଶୁକପକ୍ଷୀଟିକୁ ତାର ସମସ୍ତ ଦୁଃଖ କହିଲା। ଏଥର ଶୁକପକ୍ଷୀଟି ସବୁ ଶୁଣି କହିଲା, "ଶୁଣ ! ତୁମେ ତ ତୁମର ପୁଅକୁ ଭଲପାଅ ?" କପୋତୀ କହିଲା-- ହଁ।

ତମ ପୁଅ ମଧ୍ୟ ତମକୁ ଭଲପାଏ ? ଏଥର କପୋତୀ ହଁ କହିଲା। ତମେ ତମ ପୁଅକୁ ଛାଡ଼ିପାରିବ ନାହିଁ। କପୋତୀ କହିଲା-- ସେ ମତେ ଛାଡ଼ି ରହିପାରିବ ନାହିଁ।

ତେବେ ତମ ପୁଅ ଯାହାକୁ ଭଲପାଇ ସାଥୀ କରି ନେଇଛି, ତାକୁ ତମେ ଭଲ ନ ପାଇବାର କିଛି କାରଣ ନାହିଁ। ଆହୁରି କଥାଟିଏ ମନେରଖ। ଶାଶୁଟିଏ ସେଇଠି ଧନ୍ୟ ହୋଇଯାଏ, ଯେବେ ସେ ବୋହୂଟିର ମନ ନେଇପାରେ। ତମେ ତାକୁ ନିଜର କରିନିଅ, ଦେଖିବ ସବୁ ଠିକ୍ ହୋଇଯିବ।"

ଏଥର ମା' କପୋତୀଟି କହିଲା, "ମୋ ଟିକି ବସାରେ ଏତେ ସ୍ଥାନ କାହିଁ ? ଏଥର ଶୁକପକ୍ଷୀଟି ଚିନ୍ତା କରି କହିଲା, "ତମେ ଯେଉଁ ଗଛ ଡାଳରେ ବସା ବାନ୍ଧିଛ, ପୁଅକୁ କୁହ ସେହି ଗଛର ଅନ୍ୟ ଏକ ଡାଳରେ ବସା ବାନ୍ଧି ରହୁ। ତାକୁ ବସାଟିଏ କରିବା ପାଇଁ ତମେ ମଧ୍ୟ ସାହାଯ୍ୟ କର। ତମେ ତା'ପ୍ରତି ଶ୍ରଦ୍ଧା ରଖିଲେ, ସେ ତମକୁ ମା'ର ସମ୍ମାନ ଦେବ।" ଏଥର ମା'କପୋତୀଟି ବୁଝିଯାଇ ଫେରିଗଲା। ସେହିଦିନଠାରୁ ଶାଶୁ ଓ ବୋହୂ କପୋତୀ ଭଲରେ ଚଳିଲେ ।

ଜେଜେ କହିଲେ, "ମୋ କଥାଟି ସରିଲା। ଫୁଲ ଗଛଟି ଫୁଟିଲା। ଏଣୁ ଭକ୍ତକବି ମଧୁସୂଦନ ଲେଖିଛନ୍ତି, "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର।"

*ଭାଟପଡ଼ା, ତିହିଡ଼ି, କଟକ-୭୫୬୧୩୦* **

## ସବୁ ସୁନ୍ଦର୍ ସବୁ ବନେ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ନୁରି ଖୁଜି କରି ବେଲ୍ ନାଇଁ ସାର୍
ଭଲ୍‌ମନ୍ଦ୍ ବାଛିନିଛି ।
ଏଡ଼ିକି ସୁନ୍ଦର୍ ସଁସାର୍ ଭିତ୍‌ରେ
ଅସାର୍ ନୁହେଁ ସେ କିଛି ।୧।
ବାଘ୍, ଭାଲୁ, ସାଁପ୍ ଚେରେ ଚିର୍‌ଗୁନ୍
ମୁନୁସ୍‌ମାକର୍ ହାତୀ ।
ଧୁକା ଗରେଲ୍ ମେଘ୍, ନଏଦ୍ ନଲିଆ
ଗଛଲଟା ଜାତି ଜାତି ।୨।
ଯେନ୍‌ନେ ଯେନ୍‌ଟା ସୁନ୍ଦର ଦିଶ୍‌ବା
ଭାବିଚିନ୍ତି ଅହରହ ।
ସଜେଇ ଧଜେଇ କରି ରଖି ଦେଇଛନ୍
ହେଇକରି ଗହ ଗହ ।୩।
ଦିନରାଏତ୍ ବସି ଯେନ୍ ଦୁନିଆଁକେ
ଗଡ଼ିଛନ୍ ମାହାପୁରୁ ।
ସେଠାନେ ତୁଇ କେନ୍ ସାହାସେ
ବାଛୁଥିବୁ ସାନ୍‌ସୁରୁ ? ।୪।
ସଁଧେ ନାଇଁ ରଖ୍ ମନ୍ ଭିତରେ
କେହେନ୍‌ସି କନରକନେ
ଜାନିଥାରେ ପୁତା ସଁସାର ଭିତ୍‌ରେ
ସବୁ ସୁନ୍ଦର୍ ସବୁବନେ ।୫।

*ଭାରତୀ କୁଟୀର, ଡୁଙ୍ଗୁରିପାଲି-୭୬୭୦୨୩, ସୋନପୁର*




# ପ୍ରକୃତିର ନାନୋ-କାରିଗରୀ ବିଦ୍ୟା

ଡକ୍ଟର ସୁବାସିନୀ ଲେଙ୍କା

ବିଜ୍ଞାନର ଚମତ୍କାରିତା ଆଜି ସାରା ପୃଥିବୀକୁ କରିଛି ଆଶ୍ଚର୍ଯ୍ୟାନ୍ୱିତ । ପ୍ରତି ମୁହୂର୍ତ୍ତରେ ବିଜ୍ଞାନ ଦେଇ ଚାଲିଛି ତା'ର ନୂଆ ନୂଆ ଅବଦାନ । ଏହାକୁ ଲୋକଲୋଚନକୁ ଆଣି ବୈଜ୍ଞାନିକମାନେ ହେଉଛନ୍ତି ଗୌରବାନ୍ୱିତ ଏବଂ ପୁରସ୍କୃତ । ଏଥିପାଇଁ ଅଜସ୍ର ଶ୍ରମ ଓ ଅର୍ଥ ଦେବାକୁ ପଡୁଛି । କିନ୍ତୁ ପ୍ରକୃତିରେ ଭରି ରହିଛି ଅନେକ ବିଜ୍ଞାନସମ୍ମତ ପଦାର୍ଥ, ଯାହାକୁ ଲୋକଲୋଚନକୁ ଆଣିବା ପାଇଁ ଶ୍ରମ ଦେବାକୁ ପଡ଼େନି କିମ୍ବା ଅର୍ଥର ଆବଶ୍ୟକତା ପଡ଼େନି ।

ଏକବିଂଶ ଶତାବ୍ଦୀରେ ସାରା ପୃଥିବୀରେ ନାନୋ କାରିଗରୀ ବିଦ୍ୟା ଏକ ଆଲୋଡ଼ନ ସୃଷ୍ଟି କରିଛି । ନାନୋ କଣିକା ବ୍ୟବହାର କରି ସହଜରେ ଆମେ ମାରାତ୍ମକ ରୋଗରୁ ମୁକ୍ତ ହୋଇପାରୁଛୁ । ଶିଳ୍ପାନୁଷ୍ଠାନମାନଙ୍କରେ ଏହାର ବ୍ୟବହାର ଏକ ବିପ୍ଲବ ସୃଷ୍ଟି କରିଛି । ଟିକିଏ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କଲେ ଆମେ ଜାଣିପାରିବା ଯେ ପ୍ରାଣୀ ଓ ଉଦ୍ଭିଦ ଜଗତର ସୃଷ୍ଟି ଦିନରୁ ନାନୋ କଣିକା ପ୍ରକୃତିରେ ମଧ୍ୟ ସୃଷ୍ଟି ହୋଇଛି, ଯାହାକୁ ଆଜିର ବୈଜ୍ଞାନିକମାନେ ଲୋକଲୋଚନକୁ ଆଣୁଛନ୍ତି । ବିଭିନ୍ନ ପରୀକ୍ଷା କରି ସେହି କଣିକାଗୁଡ଼ିକର ଧର୍ମ, ଲକ୍ଷଣ ଓ ସଜ୍ଜା ଇତ୍ୟାଦିରେ ତାହାକୁ ଅନୁକରଣ କରି ବିଭିନ୍ନ ପ୍ରକାରର ଉପାଦେୟ ପଦାର୍ଥ ତିଆରି କରିପାରୁଛନ୍ତି ।

ନାନୋ ଶବ୍ଦର ଅର୍ଥ ବାମନ । ଏକ ନାନୋମିଟର ହେଉଛି ଏକ ମିଟରର ଏକଶତ କୋଟି ଅଂଶ ବା ୯-୧୦ ମିଟର । ଏହା ଏତେ କ୍ଷୁଦ୍ର ଯେ ବିଜ୍ଞାନାଗାରରେ ବ୍ୟବହୃତ ହେଉଥିବା ସାଧାରଣ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏହାକୁ ଦେଖି ହୁଏନାହିଁ । କେତେଗୁଡ଼ିଏ ଉଦାହରଣରୁ ପ୍ରକୃତିରେ ଏହାର ଅବସ୍ଥିତି ହୃଦୟଙ୍ଗମ କରିହେବ ।

୧) ଗେକୋ ଜାତୀୟ ଝିଟିପିଟି ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ସୃଷ୍ଟି ହୋଇଥିଲେ ମଧ୍ୟ ଏହାର ପାଦରେ ଥିବା ନାନୋ ସ୍କେଲ୍‌ର ପଦାର୍ଥମାନ ଏହି ଅଳ୍ପ ବର୍ଷ ଭିତରେ ବୈଜ୍ଞାନିକମାନଙ୍କୁ ଆକର୍ଷିତ କରିଛି । ଏହି ପ୍ରକାର ଝିଟିପିଟିର ପାଦରେ ଥିବା ନରମ ଗଦି ଭଳି ଅଂଶରେ ମାଇକ୍ରୋମିଟର ଆକାରର ସରୁ ସରୁ ଲକ୍ଷ ଲକ୍ଷ ଆଂଶୁ ଥାଆନ୍ତି । ତାକୁ ସିଟେ (Seate) କୁହାଯାଏ । ସିଟେଗୁଡ଼ିକ ୧୦୦ରୁ ୨୦୦ ନାନୋମିଟର ଗୋଛାରେ ପରିଣତ ହୋଇଥାଆନ୍ତି । ଏହି ଗୋଛାଗୁଡ଼ିକ ସ୍ପାଚୁଲାସଦୃଶ ହୋଇଥିବାରୁ ଏହାର ନାମ 'ସ୍ପାଚୁଲା' ହୋଇଛି । ସ୍ପାଚୁଲାର ମଧ୍ୟବର୍ତ୍ତୀ ସ୍ଥାନଗୁଡ଼ିକ ବାୟୁଶୂନ୍ୟ ଥିବାରୁ ଝିଟିପିଟିକୁ କାନ୍ଥରେ ଅଠା ଭଳି ଲଗାଇରଖି ଚାଲିବାରେ ସାହାଯ୍ୟ କରେ । ସ୍ପାଚୁଲାଗୁଡ଼ିକର ସଜ୍ଜାରୁ ଗବେଷକମାନେ ଏହାର ଅଠା ଭଳି ଧରି ରଖିବାର ଗୁଣ ଉପଲବ୍ଧ କଲେ ଏବଂ ଏହାକୁ ଅନୁକରଣ କରି ଗୋଟିଏ ପତଳା ନମନୀୟ ପୃଷ୍ଠରେ ବହୁ କାନ୍ଥ ବିଶିଷ୍ଟ (Multiwalled) କାର୍ବନ୍ ଟ୍ୟୁବ୍ ରୋପଣ

କରି ଗୋଟିଏ ଫିତା ତିଆରି କଲେ । ସେହି ଫିତାକୁ ଗେକୋ ଟେପ୍ ନାମରେ ନାମିତ କଲେ । ଗବେଷକମାନଙ୍କ ରିପୋର୍ଟ ଅନୁସାରେ ଏକ ବର୍ଗ ସେଣ୍ଟିମିଟର କ୍ଷେତ୍ରଫଳବିଶିଷ୍ଟ ଗେକୋ ଫିତାର ଗୋଟିଏ ପ୍ରାନ୍ତକୁ ସଂଲଗ୍ନ କରି ଅନ୍ୟ ପ୍ରାନ୍ତରେ ପ୍ରାୟ ୪ କିଲୋଗ୍ରାମର ଓଜନ ଜିନିଷକୁ ଝୁଲା ଯାଇପାରିବ ।

୨) ଦ୍ୱିତୀୟ ଉଦାହରଣ ହେଉଛି ପଦ୍ମପତ୍ର । ପଦ୍ମପତ୍ରର ଉପରିଭାଗରେ ୧୦ରୁ ୧୦୦ ନାନୋମିଟର ଆକାର ବିଶିଷ୍ଟ ମହମ ଅଙ୍କୁରକ (Wax Papillae)ର ପ୍ରଲେପ ଥାଏ । ଏହି ପ୍ରଲେପ ଜଳକୁ ଶୋଷଣ କରେନାହିଁ । ପଦ୍ମପତ୍ର ଉପରେ ଜଳ ପଡ଼ିଲେ, ଏହି ମହମ ଅଙ୍କୁରକ ଜଳର ସଂସ୍ପର୍ଶ କ୍ଷେତ୍ରଫଳକୁ କମାଇଦେଇ ଜଳକୁ ଗୋଲାକାର କରିଦିଏ । ଏହି ଗୋଲାକାର ଜଳବିନ୍ଦୁ ପତ୍ରରୁ ଗଡ଼ିଲାବେଳେ ପତ୍ରରେ ପଡ଼ିଥିବା ଧୂଳିକଣାକୁ ନିଜ ଦେହରେ ବହନ କରି ତଳକୁ ଗଡ଼ିଆସେ । ତେଣୁ ପଦ୍ମପତ୍ର ପରିଷ୍କାର ରହେ । ଏହାକୁ 'ଲୋଟସ୍ ଏଫେକ୍ଟ' କୁହାଯାଏ । ଏହି ଏଫେକ୍ଟ ମଧ୍ୟ କୀଟପତଙ୍ଗ ଶରୀରରେ ସାଧିତ ହୁଏ । ପ୍ରଜାପତି, ସବୁଜ ଝିଂଟିକା ଓ ଅନ୍ୟ କେତେକ ଉଡୁଥିବା ପତଙ୍ଗ ପରରେ ଏହିଭଳି ନାନୋ ଆକାରର ମହମ ପ୍ରଲେପ ଥିବାରୁ ସେମାନଙ୍କ ପରରେ ଜଳ ଓ ଧୂଳି ଲାଗି ରହେ ନାହିଁ । ତେଣୁ ସେମାନଙ୍କର ପର ଶୁଖିଲା ଓ ପରିଷ୍କାର ଦିଶେ ।

ଲୋଟସ୍ ଏଫେକ୍ଟକୁ ଅନୁକରଣ କରି ବୈଜ୍ଞାନିକମାନେ ବିଭିନ୍ନ ପ୍ରକାରର ଜିନିଷ ତିଆରି କରିବାରେ କୃତକାର୍ଯ୍ୟ ହୋଇଛନ୍ତି । ଯଥା–

(କ) ନାନୋବ୍ରେଲା (Nanobrella)– ଆମେ ବ୍ୟବହାର କରୁଥିବା ସାଧାରଣ ଛତାରେ ବର୍ଷାଜଳ ପଡ଼ି ଓଦା ହୋଇଯାଏ; କିନ୍ତୁ ଛତା କନାରେ ନାନୋ ପ୍ରଲେପ ଦେଇ ଛତା ତିଆରି କଲେ, ତାହା ବର୍ଷା ଜଳରେ ଓଦା ହୁଏନାହିଁ । ଆମେ ବ୍ୟବହାର କରୁଥିବା ବର୍ଷାତିରେ ମଧ୍ୟ ନାନୋ କଣିକା ସେହିଭଳି କାର୍ଯ୍ୟ କରୁଥିବାରୁ ଏଥିରେ ଜଳ ଲାଗି ରହି ଫଙ୍ଗସ୍ ସୃଷ୍ଟି ହୁଏନାହିଁ ବା ଏହା ଫିମ୍ପି ମାରି ଯାଏ ନାହିଁ ।

(ଖ) ଘରର ଝରକା କାଚରେ ଏହି ପ୍ରଲେପ ଦେଲେ ଏଥିରୁ ଜଳ ସହଜରେ ନିଗିଡ଼ିଯାଏ ଓ ଧୂଳି ବାହାରିଯାଇ କାଚକୁ ସଫା ରଖେ ।

(ଗ) ଘରର କାନ୍ଥରେ ନାନୋ କଣିକାରୁ ପ୍ରସ୍ତୁତ ରଙ୍ଗ ଦେଲେ କାନ୍ଥରେ ପାଣି ଓ ଧୂଳି ଲାଗି ରହେନାହିଁ । ଏହାଦ୍ୱାରା କାନ୍ଥରେ ବେଶିଦିନ ରଙ୍ଗ ଲାଗି ରହେ ଓ କାନ୍ଥ ସୁନ୍ଦର ଦିଶେ । କାନ୍ଥରେ ମଧ୍ୟ ଫିମ୍ପି ମାରେନାହିଁ ।

(ଘ) ନାନୋ କଣିକାରେ ପ୍ରସ୍ତୁତ କପଡ଼ାରେ ପୋଷାକ ତିଆରି କଲେ, ସେହି ପୋଷାକରେ ଜଳ ବେଶି ସମୟ ଲାଗି ରହେନାହିଁ । ଏହା ଶୀଘ୍ର ଶୁଖିଯାଏ । ଏ ପ୍ରକାର ପୋଷାକ ବର୍ଷାଦିନ ପାଇଁ ଶ୍ରେୟସ୍କର ।

ଉପରୋକ୍ତ ଉଦାହରଣରୁ ଜଣାଯାଏ, ପ୍ରକୃତିରେ ଥିବା ନାନୋ କଣିକା ଆମ ଦୈନନ୍ଦିନ ଜୀବନରେ ଅନେକ ସାହାଯ୍ୟ କରୁଛି । ଭବିଷ୍ୟତରେ ପ୍ରକୃତିଦତ୍ତ ନାନୋ କଣିକା ଗବେଷଣାରେ ବୈଜ୍ଞାନିକମାନଙ୍କୁ ଅନେକ ତଥ୍ୟ ଯୋଗାଇବ ।

*'ସ୍ୱାତୀ ଭବନ', ଷ୍ଟେସନ ବଜାର, କଲେଜ ସ୍କୋୟାର, କଟକ- ୩*

**ଅଛି-ନାହିଁର ଉତ୍ତର--** ୧- ଗଛ ପଛରେ ଲଟା ନାହିଁ, ୨- ସ୍ତ୍ରୀ ଲୋକଟିର କାନଫୁଲ ଅଲଗା ପ୍ରକାରର, ୩- ଝିଅଟିର ବେଲ୍ଟ ଭିନ୍ନ, ୪- ପୁଅ ପିଲାଟିର ବୋତାମ ନାହିଁ, ୫- ସ୍ତ୍ରୀଲୋକ ମୁଣ୍ଡ ଉପରେ ଗୋଟିଏ ପତ୍ର ନାହିଁ, ୬- ଝିଅଟିର ମୁଣ୍ଡବାଳ ଭିନ୍ନ ।



# ହସକୁ କେବେ ନ ଭୁଲ

ଶ୍ରୀ ଶଶାଙ୍କ ଶେଖର ସୂତାର

ଶିଶୁ ହସ ଦେଖି ହସନ୍ତି ସଭିଏଁ
ଖେଳେ ହସର ଲହରି
ଫୁଟିଲେ ସୁମନ ଶୋହେ ଉପବନ
ଦେଖି ହସେ ପଥଚାରୀ ।
ଜେଜେବାପାଙ୍କର କଥା ଶୁଣୁ ଶୁଣୁ
ହସନ୍ତି ନାତିନାତୁଣୀ
ହସ କଥା ପଢ଼ି ପତ୍ରପତ୍ରିକାରେ
ହସେନାହିଁ କିଏ ପୁଣି ?
ସାଙ୍ଗସାଥୀ ମେଳେ କଥା ହେଲାବେଳେ
ହସର ସୁଅ ଛୁଟଇ
କୁଣିଆଙ୍କୁ ଦେଖି ପାଛୋଟି ନିଅନ୍ତି
ହସି ହସି କଥା କହି ।
ହସି ହସି ଯଦି ଡାକ୍ତର କହନ୍ତି,
"ତୁମେ ଚିନ୍ତା କରନାହିଁ।"
ଆରୋଗ୍ୟର ଆଶା ଭରସାରେ ରୋଗୀ
ଓଠରେ ହସ ଖେଳଇ ।
ହସ ପରି ଆଉ କି ଅଛି ସଂସାରେ
ହସ ତ ଅମୂଲ ମୂଲ
ମନ ଖୋଲି ହସ ଦୁଃଖ ଯିବ ଚାଲି
ହସକୁ କେବେ ନ ଭୁଲ ।

*ଦେଉଳପଡ଼ା, କେନ୍ଦ୍ରାପଡ଼ା* 



# ଟିସ୍କୋର ଡିସ୍କୋ ନାଚ

ବି. ନିରୁପମା

ତୁରୁକ୍‌ତୁରୁ, ତୁରୁକ୍‌ତୁରୁ.....। ମନ ଖୁସିରେ ଗୀତ ବୋଲୁଛି ଟିସ୍କୋ। ଡେଉଁଛି ଏ ଡାଳରୁ ସେ ଡାଳକୁ। ଘଡ଼ିଏ ଦମ୍ ନେଇ ନିଶକୁ ସାଉଁଳୁଛି। ଲାଞ୍ଜକୁ ଛାଟୁଛି। ଡବଡବ କରି ଚାହୁଁଛି ଏଣିକି ତେଣିକି। ଦେହକୁ ଟିକେ ଝାଡ଼ିଦେଇ ପୁଣି ସୁର ଧରୁଛି-- ତୁକୁକ୍ ତୁରୁ, ତୁରୁକ୍ ତୁରୁ....।

କଥା କ'ଣ କି ଆଜି ସେ ଗୋଟିଏ ମିଠା ଆମ୍ବ ଚାଖିଛି। ଓଃ, କି ଅପୂର୍ବ ସ୍ୱାଦ! ଗଛ ସାରା ଖୁନ୍ଦି ହୋଇ ଝୁଲୁଛି ଫଳଗୁଡ଼ାକ। ବାସୁଛି ମହ ମହ। ଯା' ହେଉ। ଏଥର ତା'ର ଚିନ୍ତା ଗଲା। ସବୁଦିନ ଦିବ୍ୟ ଭୋଜନ ସହ ମଉଜର ଭରପୂର ସୁଯୋଗ।

ଟିସ୍କୋ ଗୁଣ୍ଡୁଚି ଛୁଆଟେ। ଭାରି ଅମାନିଆ। ପୋଖରୀ କୂଳ ଓସ୍ତ ଗଛରେ ବାପା, ମାଆ, ଭାଇଭଉଣୀ ସହ ଏକାଠି ରହେ। ତା'ପାଇଁ ଘରେ ସମସ୍ତଙ୍କର ଚିନ୍ତା।

ଯେତେ ବୁଝେଇଲେ ଜମା ସୁଧୁରୁନି । ସବୁବେଳେ ଚଗଲାମି, ବଦମାସୀ । ଗୁରୁଜନଙ୍କ କଥା ଏ କାନରେ ଶୁଣି ଆର କାନରେ ବାହାର କରିଦେଉଛି । ଘରେ ନ ଜଣେଇ ବୁଲୁଛି ୟାଡ଼େସ୍ୟାଡ଼େ । ଏଇ ସେଦିନ ମନା କରୁ କରୁ ଚଢ଼ିଗଲା ତାଳ ଗଛକୁ । ବାଇଚଢ଼େଇ ବସାରେ ଓହଳି ଦୋଳି ଖେଳିଲା । କାହିଁ ଥିଲା ମାଡ଼ି ଆସିଲା ଛଞ୍ଚାଣଟା । ମା' ବାଇଚଢ଼େଇ ପହଞ୍ଚିଗଲା ବୋଲି ସିନା ! ଟାଣିନେଲା ବସା ଭିତରକୁ । ନହେଲେ କ'ଣ ଯେ ହୋଇଥା'ନ୍ତା...... ।

ସେଦିନ ବହୁତ ଡେରିରେ ବସାକୁ ଫେରିଲା । ମା' ବିଳମ୍ବର କାରଣ ପଚାରିବାରୁ ଟିସ୍କୋ କିଛି ଗୋଟେ ବହାନା ଦେଖାଇଦେଲା । କିନ୍ତୁ ସାନ ଭାଇଭଉଣୀଙ୍କ ସାମନାରେ ବାହାଦୁରି ବଖାଣିବାରୁ ସେମାନେ ବି ଆମ୍ବଖାଇବାକୁ ଜିଦ୍‌କଲେ ।

ପରଦିନ ମା' ଛୁଆ ସଭିଏଁ ମିଠା ଆମ୍ବ ଖାଇବାକୁ ଗଲେ । ମା' ଗୁଣ୍ଡୁଚି ଦେଖିଲା । ଗଛରେ ଏତେ ବଡ଼ ବଡ଼ ଆମ୍ବ । ଆରେ ଖାଲି ଆମ୍ବ କାହିଁକି, ସେଠାରେ ଭଳିକିଭଳି ଫଳ ଆଉ ପନିପରିବା ଗଛ, ପିଜୁଳି, ଡାଳିମ୍ବ, କଦଳୀ, ଅମୃତଭଣ୍ଡା.....ଆହୁରି କେତେ କ'ଣ । ସମସ୍ତେ ମନ ଖୁସିରେ ଆମ୍ବ ଖାଇବା ଆରମ୍ଭ କଲେ ।

ହଠାତ୍ ଜଣେ ବୁଢ଼ାଲୋକ ଗଳା ଖଙ୍କାରି ଦଉଡ଼ି ଆସିଲେ । ହାତରେ ତାଙ୍କର ଦଶହାତିଆ ଠେଙ୍ଗା । ସେ ଚିତ୍କାର କଲେ-- "ହଇରେ ଲକ୍ଷ୍ମୀଛଡ଼ା ଗୁଣ୍ଡୁଚିପଲ ! ବାଡ଼ି ଭିତରେ ଆସି ଉତ୍ପାତ କରୁଛ ! ପ୍ରଥମ କରି ଏ ବର୍ଷ ଗଛଟାରେ ଆମ୍ବ ଧରିଛି । ପାଚିବା ଆଗରୁ ଖଣ୍ଡିଆ କଲଣି । ରହିଥା, ବଳିଆ....ବଳିଆ ।"

ମାଲିକର ପାଟି ଶୁଣି କୁଆଡ଼େ ଥିଲା କାଳିଆ କୁକୁରଟେ, ଭୋ, ଭୋ କରି ମାଡ଼ିଆସିଲା ।

ଏତେ ପାଟିଗୋଳ ଶୁଣି ଗୁଣ୍ଡୁଚି ଛୁଆସବୁ ଛାନିଆ । ମା' ଜାଣିପାରିଲା ଜୀବନ ପ୍ରତି ବିପଦ ଅଛି । ଆଉ ବିଳମ୍ବ ନ କରି ଛୁଆଙ୍କୁ ନେଇ ସେ ଜାଗାରୁ ଚମ୍ପଟ୍ ।

ବସାରେ ପହଞ୍ଚି ମାଆ ଛୁଆଙ୍କୁ ଆକଟ କଲା, "ଭୁଲ୍‌ରେ ବି ସେ ବଗିଚାର ପାଖ ମାଡ଼ିବନି ।" ଟିସ୍କୋର କିନ୍ତୁ ମନ ମାନୁ ନ ଥାଏ । ଆଖିରେ ତାର ଭାସି ଯାଉଥାଏ ଫଳଭର୍ତ୍ତି ବଗିଚାଟା । ମନେପଡୁଥାଏ ସେ ଆମ୍ବର ଅଭୁଲା ସ୍ୱାଦ ଆଉ ବାସ୍ନା ।

କିଛି ଦିନ ବିତିଗଲା । ଟିସ୍କୋ ଏଥର ଲୁଚି ଲୁଚି ସେ ବଗିଚାକୁ ଗଲା । ମନ ଇଚ୍ଛା ଆମ୍ବ ଖାଇଲା । ଧୀରେ ଧୀରେ ଅନ୍ୟ ପରିବା ଓ ଫଳରେ ବି ମୁହଁ ମାରିଲା । ଯେତିକି ଖାଇଲା, ତା'ଠୁ ବେଶି ନଷ୍ଟ କଲା । ସତେ ଯେମିତି ସେଇ ବଗିଚାର ମାଲିକ!

ଦିନେ ମାଆ ଗୁଣ୍ଡୁଚିର ସନ୍ଦେହ ହେଲା । ଟିସ୍କୋ ପଛରେ ସେ ଛପି ଛପି ଆସି ବଗିଚାରେ ପହଞ୍ଚି ଛୁଆର ଗତିବିଧି ଉପରେ ନଜର ରଖିଲା । ଦେଖିଲା, ଟିସ୍କୋ ତା' ସାଂଗସାଥୀଙ୍କୁ ନେଇ ବଗିଚାରେ ମଉଜ କରୁଛି । ଫଳମୂଳ, ପନିପରିବା ସବୁଥିରେ ମୁହଁ ମାରୁଛି । ଟିକିଏ ଖାଇଦେଇ ଧାଉଁଛି ଏ ଡାଳରୁ ସେ ଡାଳ । ଲାଞ୍ଜଟେକି ଗାଉଛି ଗୀତ, ନାଚୁଛି ଡିସ୍କୋ । ଗଛ ତଳେ ଠିଆ ହୋଇ ଭୋ ଭୋ ଭୁକୁଛି ବଳିଆ କୁକୁର । ବାହାଦୁରି ଦେଖାଇ କୁକୁର ଉପରକୁ ଅଇଁଠା ଫୋପାଡୁଛି ଟିସ୍କୋ ବୀର !

ସିଆଡ଼େ ନଜର ପକାଉ ପକାଉ ଘର ଲୋକଙ୍କ କଥାବାର୍ତ୍ତା ଶୁଭିଲା, "ଜେଜେ ଏ ଗୁଣ୍ଡୁଚିଗୁଡ଼ାକ ସବୁ

ପନିପରିବା ଆଉ ଫଳକୁ ନଷ୍ଟ କରି ସାରିଲେଣି । ଯେତେ ତଡ଼ିଲେ ବି ଯାଉନାହାନ୍ତି । ତାଙ୍କ ଖାଇବା ଜିନିଷରେ ବିଷ ଟିକେ ଦେଇଦେଲେ ହୁଅନ୍ତାନି?"

"ଆରେ ତୁ କ'ଣ ଜାଣିନୁ, ଜୀବହତ୍ୟା ପରା ମହାପାପ । ପୁଣି ଗୁଣ୍ଡୁଚି ହେଲା ରାମଭକ୍ତ । ତାକୁ କ'ଣ ଜୀବନାର ମାରିଦେବା ଠିକ୍‌ହେବ? ତୁ ବ୍ୟସ୍ତହୁଅନା । ମୁଁ ତାଙ୍କ ଲାଗି ଗୋଟେ ନୂଆ ବ୍ୟବସ୍ଥା କରୁଛି ।" ବୁଢ଼ାଜଣକ ଉତ୍ତରଦେଲେ । ଏକଥା ଶୁଣି ମାଆ ଗୁଣ୍ଡୁଚି ଛାତିରେ ଛନକା ପଶିଲା । ସେ ଟିସ୍କୋକୁ ସାଥିରେ ନେଇ ଫେରିଲା ବସାକୁ । ଆଉ ସେ ବଗିଚାକୁ ନ ଯିବାକୁ ବହୁତ ବୁଝାଇଲା । ଟିସ୍କୋ ମୁଣ୍ଡ ଟୁଂଗାରିଲା ।

ପରଦିନ ସକାଳ ହେଲା । କାହାକୁ କିଛି ନ ଜଣାଇ ବଗିଚାରେ ପହଞ୍ଚିଲା ଟିସ୍କୋ । "ଆରେ ଆଜି କ'ଣ ବଳିଆ କୁକୁରଟା ଦେଖାଯାଉନି !" ଟିସ୍କୋ ଆଶ୍ଚର୍ଯ୍ୟ ହେଲା । "ଯା ହେଉ, ଟିକେ ଶାନ୍ତିରେ ବୁଲି ହେବ । ବଗିଚା ସାରା କାଳେ କଉଠି ନୂଆ ଫଳଟେ ମିଳିଯିବ !" ମିଳିଯିବ ନୁହେଁ ମିଳିଗଲା-- କଦଳୀ ଗଛ ମୂଳରେ ନାଲି ଟହ ଟହ ପାଚିଲା ଫଳଟେ ନାଁ କ'ଣ ? ଦଉଡ଼ିଯାଇ ନୂଆ ଫଳରେ ମୁହଁ ମାରିଲା ସେ ।



"ଖଡ଼୍‌ଡ଼ାସ୍" ଶବ୍ଦ ଶୁଣି ଚମକିପଡ଼ିଲା ଟିସ୍କୋ । ଆରେ ଚାରିପଟେ କ'ଣ ତାରଜାଲି ! ତା' ମାନେ ସେ କ'ଣ ଏବେ ଜନ୍ତାରେ ବନ୍ଦୀ ହୋଇଗଲା!

ଯନ୍ତାରୁ ମୁକୁଳିବାକୁ ବହୁତ ବଳ ଖଟେଇ ଛାଟିପିଟି ହେଲା ଟିସ୍କୋ । ହେଲେ ଲୁହା ଯନ୍ତାରୁ ମୁକୁଳିବାଟା ତ ଏତେ ସହଜ ନୁହେଁ । ବାହାରକୁ ବାହାରିବା ପାଇଁ ସଂଘର୍ଷ କଲା ସେ ବହୁତ ସମୟ । ଧୀରେ ଧୀରେ ଅବଶ ହୋଇଆସିଲା ତା' ଶରୀର । ସେ ଶୋଇପଡ଼ିଲା ଯନ୍ତା ଭିତରେ ।

କେତେ ସମୟ ପରେ ଗରମ ପବନ ବାଜି ଟିସ୍କୋର ନିଦ ଭାଂଗିଗଲା । ସେ ଆଖି ଖୋଲିଲା । ଝାଡ଼ିଝୁଡ଼ି ହୋଇ ଉଠି ବସିଲା । "ଆରେ ସେ ତ ଆଉ ବନ୍ଦୀ ନୁହେଁ ମୁକ୍ତ!" ମନ ଖୁସିରେ ଡିଆଁଟେ ମାରିଲା ।

ହେଲେ ଏଇଟା କୋଉ ସ୍ଥାନ ? ଇଏ ତ ସେଇ ଆମ୍ବ ବଗିଚା ନୁହେଁ କି ତାଙ୍କ ନିଜର ବସା ନୁହେଁ । ତେବେ ଏଠି ତାକୁ ଛାଡ଼ିଗଲା କିଏ?

ସକାଳୁ ଏ ଯାଏଁ କିଛି ଖାଇନି । ଭୋକରେ ପେଟ କାଟିଲାଣି । ଏବେ ସେ ଖାଇବ କ'ଣ ? ଗଛଲତା କିଛି ଦେଖାଯାଉନି । ଚାରିଆଡ଼ ଖାଲି ଟାଂଗରା ଭୂଇଁ । ସିଏ ରହିବ କେଉଁଠି? କିଏ ବତେଇବ ତାକୁ ତା' ଘରର ରାସ୍ତା ?

"ଆଗରୁ ଯଦି ମୁଁ ମାଆର ଉପଦେଶ ମାନି ଥାଆନ୍ତି, ତେବେ ଏ ନିର୍ବାସନ ଦଶା ମୋତେ ଭୋଗିବାକୁ ପଡ଼ି ନ ଥାନ୍ତା ।" ଏବେ ଟିସ୍କୋ ଆଖିରେ ଅନୁତାପର ଅଶ୍ରୁ ।

*ମାମୁରିଆ, ଛେଣ୍ଡିପଦା, ଅନୁଗୁଳ- ୭୫୯୧୨୪*










ପୃଥିବୀରେ ସବୁଠାରୁ ଆଦିମ ଛୋଟ ଜୀବ ମଧ୍ୟରେ ଅଙ୍ଗୁଳି ଆକାରର ମାଙ୍କଡ଼ ଅନ୍ୟତମ । ଏହା ଏତେ ଛୋଟ ଯେ ତୁମ ଆଙ୍ଗୁଳି ଭିତରେ ତାହା ରହିଯିବ । ଏହା ଏପରି ଭାବରେ ଆଙ୍ଗୁଠିକୁ ଜାବୁଡ଼ି ଧରେ ଯେ ତାକୁ ଘରକୁ ନେବା ପାଇଁ ଇଚ୍ଛା ହୁଏ । ମାଙ୍କଡ଼ଟି ପିଗ୍‌ମୀ ମାଙ୍କଡ଼(pygmy marmosets)ମାନଙ୍କର ବଂଶଧର ବୋଲି ଜଣାଯାଏ । ସେମାନଙ୍କୁ ଡାକନ୍ତି 'ପକେଟ୍ ମାଙ୍କଡ଼' ଏବଂ 'ଛୋଟ ସିଂହ' । ଏହି ମାଙ୍କଡ଼ଙ୍କର ବଂଶ କ୍ୟାଲିଟ୍ରିଚାଲଡ୍, ସେବୁଲା ଏବଂ ଜେନସ୍. ସି. ପିଗ୍‌ମାୟାରୁ ଆସିଅଛି । ବ୍ରାଜିଲ, ପେରୁ, ବଲିଭିଆ, ଇକ୍ୟୁଡର ଏବଂ କଲମ୍ବିଆରେ ହରିତ୍ ଜଙ୍ଗଲ ଅଞ୍ଚଳରେ ଏମାନେ ଦେଖିବାକୁ ମିଳନ୍ତି । ❂❂

# ଝଂଡ଼ା ଊଂଚା ରହେ ହମାରା

ଡ. ଶୁଭେଂଦ୍ର ମୋହନ ଶ୍ରୀଚଂଦନସିଂହ

ପିଲାଦିନେ। ଏଇ ଗୀତଟି ଥିଲା ମୋର ଏବଂ ସାଂଗମାନଙ୍କର ଅତି ପ୍ରିୟ। ଏହା ଥିଲା ଏକ ଜାତୀୟ ପ୍ରୀତିମୂଳକ ସଂଗୀତ। ମୁଁ ଛାତ୍ର ସେବା ସଂଘ ଓ ଆଠମଲ୍ଲିକ ଛାତ୍ର କଂଗ୍ରେସର ସଭାପତି ଥାଏ। ଉଭୟ ସଂଗଠନ ଗୁଡ଼ିଏ ରଚନାତ୍ମକ କାମ କରୁଥାଏ। ବିଭିନ୍ନ ଜାତୀୟ ଉତ୍ସବ ପାଳୁଥାଏ। ଜାତୀୟ ପତାକା ଉତ୍ତୋଳନ ପରେ 'ଝଂଡ଼ା ଊଂଚା ରହେ ହମାରା' ଗାଉଥାଉ।

ଏ ମହାନ୍ ସଂଗୀତର ରଚୟିତା ହେଉଛନ୍ତି ପଦ୍ମଶ୍ରୀ ଶାମଲାଲ୍ ଗୁପ୍ତା। ସେପ୍ଟେମ୍ବର ୯ ତାଙ୍କ ପୁଣ୍ୟ ଜନ୍ମତିଥି।

ଗାନ୍ଧିଜୀ ଭାରତୀୟ ଜାତୀୟ କଂଗ୍ରେସର ସେନାପତି ହେଇଗଲେ। ତ୍ରିରଂଗା ପତାକାକୁ ଜାତୀୟ ପତାକାର ମର୍ଯ୍ୟାଦା ଆସିଗଲା। ଆଉ ଗୁପ୍ତାଜୀ ଲେଖିଲେ, "ବିଜୟୀ ବିଶ୍ୱ ତ୍ରିରଙ୍ଗା ପ୍ୟାରା, ଝଂଡ଼ା ଊଂଚା ରହେ ହମାରା।"




କାନପୁରରେ ତାଙ୍କର ଜନ୍ମ ୧୮୯୬ରେ। ଆଜିକୁ ୨୦୧୩କୁ ସେ ୧୧୦ ବର୍ଷର ହେଇଥା'ନ୍ତେ। ବାପା ବିଶେଶ୍ୱର ପ୍ରସାଦ ଓ ମା' କୌଶଲ୍ୟା ଦେବୀ । ପରିବାରରେ ସେ ଥିଲେ ତିନି ନମ୍ବର। ସବା ସାନ ପୁଅ। ପିଲାଦିନରୁ ପଢ଼ାଇବା ସୌକ ଥାଏ। ତାଙ୍କ ପରିବାରର ପେଶା ଥିଲା ଟଂକା ସୁଧରେ ଦବା। ଶାମଲାଲ୍ ସେଥିରେ ଆଗ୍ରହୀ ନ ଥିଲେ। ଜିଲ୍ଲା ପରିଷଦ ଓ ମ୍ୟୁନିସ୍‌ପାଲିଟି କାଉନସିଲ୍‌ର ସ୍କୁଲରେ ଶିକ୍ଷକ ହେଇ କାମ କଲେ; କିନ୍ତୁ କଂଗ୍ରେସ ଆନ୍ଦୋଳନ ଆଡ଼କୁ ତାଂକର ମନ ଡାକୁଥାଏ। ଅମର ସହିଦ ଗଣେଶ ଶଂକର ବିଦ୍ୟାର୍ଥୀଙ୍କ ସଂପର୍କରେ ଆସିଲେ। ନାଗପୁର କଂଗ୍ରେସ କନ୍‌ଭେନ୍‌ସନ୍‌ରେ ବିଦ୍ୟାର୍ଥୀଙ୍କ ସହ ସଂପର୍କ। ସେ ନାଗପୁରକୁ ତାଂକର ଘର କରିନେଲେ। ଏଠାରେ ଫତେପୁରର କଂଗ୍ରେସ ସଭାପତି ହେଇ କାମ କରି ଚାଲିଲେ।

୧୯୨୧ ଅଗଷ୍ଟ ୨୧। ତାଂକୁ ରାଣୀ ଅଶୋଥାର ମହଲରେ ଆରେଷ୍ଟ୍ କରାଗଲା। ୧୯୩୦ ଏବଂ ୧୯୪୪ରେ ତାଂକୁ ପୁଣି ବନ୍ଦୀ କରାଗଲା। ୧୯୩୨ରୁ ୧୯୪୨। ସେ ପାତାଳୀ ହେଲେ। ଛଦ୍ମବେଶରେ ଗୋପ୍ୟ ହେଇ ରହିଲେ। ଦେଶମୁକ୍ତି ଲାଗି କାମ କରି ଚାଲିଲେ।

ସେ ସମୟରେ ସେ 'ପାର୍ଷଦ' ନାଁ ନେଲେ । ଫତେପୁର ପାଖରେ ଚାଂଦିଆନା ମହଲା। ଏଠି ରହୁଥାନ୍ତି ତାଙ୍କ ଜ୍ଞାତି ସୀତାରାମ ଗୁପ୍ତା। ଶାମଲାଲ୍ ତାଙ୍କରି ଘରେ ଲୁଚି ରହିଥାନ୍ତି। ସେ ସମୟରେ ତାଂକୁ ଏ କାମରେ ସାହାଯ୍ୟ କରୁଥିଲେ ବୈଜନାଥ ଗୁପ୍ତା। ସେ ଡାକ-ପିଅନର କାମ କରୁଥାନ୍ତି। ତାଙ୍କୁ ଆନ୍ଦୋଳନର ଖବର ଆଣି

ଫଂହୁଚାଉଥାନ୍ତି । ତାଙ୍କଠୁ ଖବର ଅନ୍ୟ କଂଗ୍ରେସ କର୍ମୀମାନଙ୍କ ପାଖକୁ ନେଉଥା'ନ୍ତି । ମୁକ୍ତି ସୈନିକମାନଙ୍କ ଭିତରେ ଏହା ନୂଆ ଜାଗରଣ ଆଣିଦେଲା । ବ୍ରିଟିଶମାନଙ୍କ କବଳରୁ ଦେଶକୁ ଉଦ୍ଧାର କରିବାକୁ ଜାତି ତତ୍‌ପର ହୋଇଉଠିଲା । ଦେଶରେ ତ୍ରିରଙ୍ଗା ପତାକାକୁ ୟୁନିୟନ ଜାକ୍‌ଠାରୁ ଉଚ୍ଚ ଆସନ ମିଳିଲା । ୧୯୩୪ରେ ହରିପୁର କଂଗ୍ରେସ ଅଧିବେଶନରେ ଏ ଗୀତକୁ ଜାତୀୟ ସଂଗୀତର ସମ୍ମାନ ଦିଆଗଲା । ଶ୍ରୀମତୀ ସରୋଜିନୀ ନାଇଡୁ ଏ ଗୀତଟି ଉପସ୍ଥାପନ କଲେ । ପଂଡିତ ଜବହାରଲାଲ ନେହେରୁ ଥାଆନ୍ତି ସଭାପତି ।

ଭାରତର ମହାନ୍ ନେତାମାନଙ୍କ ସଂଗେ ମିଶି ଶାମଲାଲ୍‌ଜୀ ଭାରତ ସେବାରେ ଲାଗିଗଲେ । ମହାତ୍ମା ଗାନ୍ଧୀ, ପଣ୍ଡିତ ମୋତିଲାଲ, ପଣ୍ଡିତ ଜବାହର ଲାଲ, ଡା. ରାଜେନ୍ଦ୍ର ପ୍ରସାଦ, ଗୋବିନ୍ଦ ବଲ୍ଲଭ ପନ୍ଥ, ଯମୁନାଲାଲ ବଜାଜ, ମହାଦେବ ଦେଶାଇ, ପୁରୁଷୋତ୍ତମ ଦାସ ଟଂଡନ ପ୍ରମୁଖ ମହାନ୍ ଦେଶପ୍ରେମୀ ଓ ମହାନ୍ ଚିନ୍ତାନାୟକମାନଙ୍କ ସହ ସେ ଦେଶମୁକ୍ତି ଓ ଦେଶଗଠନ ଆନ୍ଦୋଳନରେ କାମ କରିଥିଲେ । ଫତେପୁର ଜିଲ୍ଲା କଂଗ୍ରେସ କମିଟିର ସେ ଥିଲେ ଦୀର୍ଘ ଉଣେଇଶ ବର୍ଷ ସଭାପତି ।

୧୯୨୧ରେ ସେ ପ୍ରତିଜ୍ଞା କଲେ ଯେ ଦେଶ ସ୍ୱାଧୀନ ନ ହେବା ଯାଏ ସେ କୌଣସି ପାଦୁକା କି ଛତା ବ୍ୟବହାର କରିବେ ନାହିଁ । ଏପରି ଭୀଷଣ ଶପଥ ସେ ଅକ୍ଷରେ ଅକ୍ଷରେ ପାଳିଥିଲେ । ବର୍ଷାମାଡ଼ ଓ ଖରାର ଖରତ୍ୱରେ ଦବିଯାଇ ଛତାର ସାହାଯ୍ୟ ନେଇନାହାନ୍ତି । ସେମିତି ତାତି, କଣ୍ଟା, ଗୋଡ଼ିଭରା ରାସ୍ତାରେ ଜୋତା, ଚପଲ ପିନ୍ଧିନାହାନ୍ତି । ଏମିତି ମହାନ୍ ବ୍ୟକ୍ତିମାନଙ୍କ ଅପୂର୍ବ ତ୍ୟାଗ ତ ଇଂରେଜ ସରକାରଙ୍କ ସିଂହାସନକୁ ଦୋହଲାଇ ଦେଇଥିଲା ! ଏଇମାନଙ୍କ ତ୍ୟାଗରୁ ତ ଆମ ସ୍ୱାଧୀନତାର ଜନ୍ମ ।

୧୯୫୨ ଅଗଷ୍ଟ ୧୫ । ଶାମଲାଲ୍ ଲାଲ୍‌କିଲ୍ଲାରେ ନିଜେ 'ଝଣ୍ଡା ଉଂଚା ରହେ ହମାରା' ଗାଇଥିଲେ । ୧୯୭୨ର ଅଗଷ୍ଟ ୧୯ -- ଭାରତ ସରକାର ତାହାଙ୍କୁ ସମ୍ମାନ ଜଣେଇଲେ ଏଇ ଲାଲ୍‌କିଲ୍ଲାରେ । ୧୯୭୩ ଫେବୃଆରୀ ୨୬ -- ଭାରତର ସେଦିନର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇଂଦିରା ଗାନ୍ଧୀ ଶାମଲାଲ୍‌ଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କଲେ ।

୧୯୭୭ ଅଗଷ୍ଟ ୧୦ ରେ ଶାମଲାଲ୍ ଗୁପ୍ତାଙ୍କର ଦେହାନ୍ତ ହେଲା । ଶ୍ରୀମତୀ ଇଂଦିରା ଗାନ୍ଧୀ ତାଙ୍କ ବିୟୋଗରେ ଶୋକାର୍ଘ୍ୟ ବାଢ଼ିଥିଲେ-- ଯାହାଙ୍କର ଝଂଡା ଉଂଚା ଗାଇ ସେ ଇଂରେଜମାନଙ୍କର ଲାଠିମାଡ଼ ସହିବାର ଦୃଢ଼ତା ପାଇଥିଲେ; ତ୍ରିରଂଗା ଲାଗି ବହୁ କ୍ଷତବିକ୍ଷତ ହେବାର ସହିଷ୍ଣୁତା ଲଭିଥିଲେ । ସେହି ଝଂଡା ଗୀତର ସ୍ରଷ୍ଟାଙ୍କ ଦେହାନ୍ତରେ ସେ ମର୍ମାହତ ।

୧୯୯୭ ମାର୍ଚ୍ଚ ୪ରେ ଭାରତର ରାଷ୍ଟ୍ରପତି ଶଂକର ଦୟାଳ ଶର୍ମା, ଶାମଲାଲ୍ ଗୁପ୍ତା ସ୍ମାରକୀ ଡାକଟିକେଟ୍ ଉନ୍ମୋଚନ କରିଥିଲେ । ତାଙ୍କର ବ୍ୟକ୍ତିତ୍ୱ ଥିଲା ବହୁମୁଖୀ । ଦୋସର ବୈଶ୍ୟ ସମିତି ତାଙ୍କ ସ୍ମୃତିରେ ଶିକ୍ଷା ଓ ସଂସ୍କାର-ମୂଳକ ଗୁଡ଼ିଏ କାର୍ଯ୍ୟକ୍ରମ ଚାଲୁ ରଖିଛି । ନାଗପୁର ମ୍ୟୁନିସପାଲ୍ କର୍ପୋରେସନ୍ ତାଙ୍କର ସ୍ମୃତିରେ ଏକ ବିଶେଷ ଉତ୍ସବ ସଂଗଠନ କରୁଛନ୍ତି ।

*୨୦୬-ହନୀ ଅର୍ଚ୍ଚନା କମ୍ପ୍ଲେକ୍ସ, ବ୍ଲକ୍-୨, ଉଁଟଖାନା, ନାଗପୁର- ୪୪୦୦୦୯, ମହାରାଷ୍ଟ୍ର*

***



## ଯୁବ-ପାଶବିକତା

ଛୋଟ ଝିଅଟି --ପ୍ରଜାପତି ଭଳି ସେ ଉଡ଼ିବୁଲେ କେତେ ଆଶା ନେଇ ।

ମାତ୍ର ଏ ଆଶାର ଫୁଲ ତା'ର ଧୀରେ ଧୀରେ ମଉଳିଯାଏ, ଯେତେବେଳେ ସେ ଯୌବନପ୍ରାପ୍ତ ହୁଏ । ପୁଣି ସେ ଫୁଲର ବାସ୍ନା ଉଡ଼ିଯାଏ, ଯେତେବେଳେ ସେ ଧର୍ଷିତା ହୁଏ । ତା'ର ସ୍ୱାଧୀନତାର ବଗିଚା ଭିତରେ ପରାଧୀନତାର ବିଷମଞ୍ଜି ବୁଣି ଦିଆଯାଏ । ତା'ପରେ ପଶୁ ପ୍ରବୃତ୍ତିରେ ଆକ୍ରାନ୍ତ ଯୁବସମାଜ ନୃଶଂସ ଭାବେ ତା'ର ଫୁଲପରି କୋମଳ ଆଶାକୁ ପାଦରେ ଦଳି ସମାଜର ରାସ୍ତାରେ ନେଇ ଫୋପାଡ଼ି ଦିଅନ୍ତି ।

ଏ ହେଲା ଆଜିକାଲିର ଘଟଣା । ଏହାହିଁ ବର୍ତ୍ତମାନର ଯୁବତୀର କ୍ରୁର ଇତିହାସର ଆଧାରଶିଳା । କାହିଁକି ସେ ସମାଜର ରାସ୍ତାରେ ନିର୍ବିଘ୍ନରେ ଚାଲିପାରିବନି ! କାହିଁକି ସେ ତା'ର ସ୍ୱଇଚ୍ଛାକୁ ବ୍ୟକ୍ତ କରିପାରିବନି ? କାହିଁକି ତା'ର ସ୍ୱାଧୀନତା ପରାଧୀନତାର ଶିକାର ହେବ ? ଏ 'କାହିଁକି'ର ଉତ୍ତର ସମାଜ ପାଖରେ ନାହିଁ । କାରଣ ସମାଜ ଯୁବତୀଟିକୁ ସାଧାରଣ ନାଗରିକ ଭାବେ ଗଣେନାହିଁ । ଅପରପକ୍ଷରେ ଆମ ସମାଜର ବୁଦ୍ଧିଜୀବୀମାନେ ତାକୁ ଶକ୍ତିମୟୀ, ମାତୃସ୍ଥାନୀୟା, ସର୍ବଂସହା, ନାରୀ-ନାରାୟଣୀ, ମରାଳଗାମିନୀ, ବିମ୍ବୋଷ୍ଠୀ ଇତ୍ୟାଦିରେ ଭୂଷିତ କରି ସମାଜର ଉଚ୍ଚସ୍ଥାନରେ ଅଧିଷ୍ଠିତା କରାଇଥା'ନ୍ତି ।

ଯୁବତୀଟିକୁ ଏତେ ମୂଲ୍ୟଦେବାର ଆବଶ୍ୟକତା ବା କ'ଣ ? ଯେତେବେଳେ ଶାସ୍ତ୍ର-ପୁରାଣର ଯୁଗ ଥିଲା, ସେତେବେଳେ ଯୁବସମାଜ ଏତେ ଉଚ୍ଛୃଙ୍ଖଳ ନ ଥିଲେ । ସେତେବେଳେ ଯୁବତୀଟିକୁ ସମାଜରେ ଖୁବ୍ ଉଚ୍ଚ ସ୍ଥାନ ଦିଆଯାଉଥିଲା । ସେମାନେ ମନମୁତାବକ ଜୀବନସାଥୀ ବାଛିବା ପାଇଁ ସ୍ୱୟମ୍ବର ପ୍ରଥା ଥିଲା । ରାଜକୁମାରୀଙ୍କ ସୁରକ୍ଷା ପାଇଁ ଅନେକ ଦାସୀ ପରିଚାରିକା ଥିଲେ । ନାରୀଙ୍କର ଅବମାନନାରେ ସମାଜ ଧ୍ୱଂସ ହେବାର ଅନେକ ପ୍ରମାଣ ଆମ ଶାସ୍ତ୍ରପୁରାଣରେ ଲିପିବଦ୍ଧ ହୋଇ ରହିଛି ।

ବର୍ତ୍ତମାନ ଆଉ ସେ ଯୁଗର ଅବତାରଣାପୂର୍ବକ ଯୁବତୀଟିକୁ ଏତେ ଉପାଧିରେ ଭୂଷିତ କରିବାର ଆବଶ୍ୟକତା ନାହିଁ । ବର୍ତ୍ତମାନ ତାକୁ ଜଣେ ସାଧାରଣ ସ୍ୱାଧୀନ ନାଗରିକ ଭାବେ ଗଣ୍ୟ କରାଯାଉ, ଯେ କି ଗଣତନ୍ତ୍ର ଯୁଗର ଯୁବଶକ୍ତି ।

ଅବଶ୍ୟ ଏକଥା ସତ୍ୟ ଯେ ଯୁବ-ଉଦ୍ଦାମତାରେ ଆକ୍ରାନ୍ତ ହେବାର ବୟସ ଉଭୟଙ୍କୁ ବିଭ୍ରାନ୍ତ କରିଥାଏ । ଏହି ଉଦ୍ଦାମତାକୁ ସଂଯତ ନ କରିପାରି ପାଶବିକତାର କ୍ରୂର ପଞ୍ଝାରେ ଯୁବକଟି ଯୁବତୀକୁ ଆକ୍ରମଣ କରିଥାଏ ନିର୍ଦ୍ୱନ୍ଦ୍ୱରେ । ଏଭଳି ଘଟଣା ଆଜିକାର ସମ୍ବାଦ ସଂସ୍ଥାକୁ ଖୁବ୍ ଖୋରାକ୍ ଯୋଗାଇ ଚାଲିଛି; କିନ୍ତୁ ଯୁବସମାଜ ଯେ ଦିନକୁ ଦିନ ଭୟଙ୍କର ଅବସ୍ଥାର ସମ୍ମୁଖୀନ ହେଉଛନ୍ତି– ତାହା ଆମେ ମନେମନେ ଉପଲବ୍ଧି କରୁଛେ । ଏହାର ସମାଧାନର ପନ୍ଥା ଆମେ ପାଉନାହୁଁ ।

ଆମେ କହୁଛେ– ଯୁବତୀର ରୁଚିହୀନ ପୋଷାକ ଅଶ୍ଳୀଳତାର ସୀମା ଟପିଯାଉଛି । ଯୁବତୀର ଚାଲିଚଳନ ମଧ୍ୟ ଯୁବକକୁ ବିଭ୍ରାନ୍ତ କରୁଛି । ଏକଥା ଯଦି ସତ୍ୟ, ତେବେ ଦିଲ୍ଲୀ, ପିପିଲି ଗଣବଳାତ୍କାର ଘଟଣାରେ ଏହି ପୋଷାକ କ'ଣ ନୃଶଂସ ପାଶବିକତାର କାରଣ ? ସାତବର୍ଷର ଛୋଟ ପିଲାଟିର ପୋଷାକରେ କ'ଣ ଅଶ୍ଳୀଳତା

ଥିଲା ? ତା'ର ଶରୀରର କେଉଁ ଅଙ୍ଗ ପୁରୁଷଟିକୁ ଆକର୍ଷିତ କରିଥିଲା ? ଦିଲ୍ଲୀର ସେ ଯୁବତୀଟିର ଶରୀର ମଧ୍ୟରୁ ଅନ୍ତନାଡ଼ିକୁ ଟାଣିଆଣିବା କେଉଁ ପାଶବିକତାର ଉଦାହରଣ ? ହାୟରେ ବିଧାତା !

ତା'ହେଲେ ଆମେ କେଉଁଠି ଅଟକିଯାଉଛେ ? କାହିଁକି ଅଟକିଯାଉଛେ ? ଏହାର ଉତ୍ତର କିଏ ଦେବ ? ଏହାର ଉତ୍ତର ରହିଛି ସେଇ ଯୁବସମାଜ ପାଖରେ, ଯେଉଁମାନେ ଏହାର ପୁରୋଧା ।

ଏଭଳି ଯୁବକର ପିତାମାତାଙ୍କୁ ଆମେ ଏଥିପାଇଁ ଦାୟୀ କରିପାରିବା । କାରଣ ପରିବାରରେ କଳହ, ଯୁବକଟି ପ୍ରତି ବାପାମାଆଙ୍କର ଆଚରଣ, ଘରର ପରିସ୍ଥିତି, ସ୍ୱରୋଜଗାରର ଅକ୍ଷମତା ଯୋଗୁଁ ହତାଶାଭାବ ଇତ୍ୟାଦି ଯୁବକଟିର ମନସ୍ତତ୍ତ୍ୱକୁ ଆଘାତ କରେ । ଏହାଦ୍ୱାରା ସେ ଅନ୍ୟ ଆକର୍ଷଣୀୟ ଘଟଣାବଳୀ ପ୍ରତି ଆକୃଷ୍ଟ ହୁଏ । ତା'ପରେ ଆମ ସମାଜର ଅନେକ ଅସଙ୍ଗତ ଚିତ୍ରସମୂହ ଯଥା– ଅଶ୍ଳୀଳ ଭିଡିଓ, ଅଶ୍ଳୀଳ ଚଳଚ୍ଚିତ୍ର, ମଦ୍ୟପାନ, କାମୋଦ୍ଦୀପକ ବଟିକା ଯୁବକର ହତାଶାପୂର୍ଣ୍ଣ ମନସ୍ତତ୍ତ୍ୱକୁ ଆକର୍ଷିତ କରିଥାଏ । ଅନ୍ୟ କଥାରେ କହିଲେ– ଏସବୁ ତା'ର ଅସଫଳ ଯୁବକତ୍ୱ ପାଇଁ ସଫଳତାର ଖୋରାକ୍ ଯୋଗାନ୍ତି । ଯଦିଓ ଏହି ଦୋଷ ପାଇଁ ଆମର ଶାସନକର୍ତ୍ତା-ମାନେ ଦଣ୍ଡନୀୟ ଅପରାଧରେ ସାମିଲ କରନ୍ତି; ତଥାପି ଯୁବସମାଜ ଏଥିରୁ ନିବୃତ୍ତ ହୁଅନ୍ତି ନାହିଁ । ଏସବୁ ଦୃଶ୍ୟ ଏତେ ଆକର୍ଷଣୀୟ ଯେ ଏହା ଯୁବ ସମାଜର ବିଭ୍ରାନ୍ତି ପାଇଁ ଯଥେଷ୍ଟ । ଦୁଃଖ ଲାଗେ, ଶିଶୁମାନେ ମଧ୍ୟ ଆଜିକାଲି ଏହି ବିଭ୍ରାନ୍ତ ଯୁବକମାନଙ୍କର ପଥ ଅନୁସରଣ କରିବା ପାଇଁ ଆଗଭର ହୋଇ ବାହାରୁଛନ୍ତି ।

ଦିଲ୍ଲୀର ଗଣବଳାତ୍କାର ଘଟଣାରେ ଜଣେ ନାବାଳକକୁ ହିଁ ଏଥିପାଇଁ ଅଧିକ ଦାୟୀ ହୋଇଛି । ତାକୁ କି ଦଣ୍ଡ ଦିଆଯିବ ବୋଲି ପ୍ରଶାସନ ବିବ୍ରତ । ପିଲାବେଳୁ ଯାହାର ବିଭ୍ରାନ୍ତିକର ମାନସିକତା ଏତେ ଦୂର ଆଗେଇଛି, ତା'ର ଦଣ୍ଡ ମଧ୍ୟ କେତେ ଭୟଙ୍କର ହୋଇପାରେ, ତାକୁ ଜଣେଇଦେବା ନିହାତି ଆବଶ୍ୟକ ।

ତେଣୁ ଶିଶୁଟିକୁ ଗଢ଼ିବାର ଦାୟିତ୍ୱ ଯେଉଁ ପରିବାର ନେଇଥା'ନ୍ତି, ସେମାନେ ଏହାର ପରିଣତି ମଧ୍ୟ ହୃଦୟଙ୍ଗମ କରିବା ଉଚିତ ନୁହେଁ କି ? ମୋର କହିବା କଥା, ଛୋଟ ପିଲାବେଳୁ ଏସବୁ ବିଷୟରେ ଶିକ୍ଷାଦେବାର ବେଳ ଆସିଛି– ଅଶ୍ଳୀଳତା କ'ଣ, ଶ୍ଳୀଳତା କ'ଣ ଓ କାହାକୁ କହନ୍ତି ଇତ୍ୟାଦି ଇତ୍ୟାଦି । ଏହା ସହିତ ସେମାନଙ୍କୁ ସଂଯମତା ଶିକ୍ଷା ଦିଆଯିବା ମଧ୍ୟ ଜରୁରୀ ।

ଜଣେ ବ୍ୟକ୍ତି ଆମିଷ ଭକ୍ଷଣ କରିବାରୁ ନିବୃତ୍ତ ରହିବା ପାଇଁ ମାଛ ବଜାରରେ ବୁଲୁଥିବାର ଦେଖିଲି । ପଚାରିଲି– ଆପଣ ପରା ଆମିଷ ଛାଡ଼ିଛନ୍ତି, ଆଉ ଏଠି ବୁଲୁଛନ୍ତି ଯେ ? ସେ ହସି ହସି କହିଲେ– ଏହି ବଜାରରେ ବୁଲିବୁଲି ମୁଁ ପରୀକ୍ଷା କରୁଛି, ଆମିଷ ଖାଇବାକୁ ମୁଁ କେତେଦୂର ରୋକିପାରୁଛି ।

ସେମିତି ମୋ' ମତରେ – ଆମକୁ ଏଭଳି ପଦକ୍ଷେପ ନେବାକୁ ପଡ଼ିବ । ପିଲାବେଳୁ ପାଖରେ ବସାଇ ସେମାନଙ୍କ ପାଇଁ ବାପାମାଆଙ୍କୁ କିଛି ସମୟ ଦେବାକୁ ପଡ଼ିବ । ପରିବାରରେ ସ୍ନେହ, ଶ୍ରଦ୍ଧା ନ ରହିଲେ ପିଲାମାନେ ହତାଶ ହୋଇଯା'ନ୍ତି । ତାଙ୍କର ମସ୍ତିଷ୍କରେ ଆଘାତ ହୁଏ ଓ ଏହା ଭବିଷ୍ୟତରେ ଉଗ୍ରରୂପ ଧାରଣ କରେ । ତେଣୁ ସ୍ନେହ, ଶ୍ରଦ୍ଧା ସହିତ ତାକୁ ଏ ସବୁକିଛି ଟିକିନିଖି ଜାଣିବା ପାଇଁ ଦିଆଯାଉ ଓ ତାହାର ବିପରୀତ ଫଳାଫଳ ମଧ୍ୟ ଜଣାଇ ଦିଆଯାଉ । ମାଆବାପାଙ୍କର ମମତା ହିଁ ପିଲାଟିକୁ ଠିକ୍ ବାଟକୁ ଆଣିପାରିବ ।

ଦ୍ୱିତୀୟ କଥା ହେଲା– ଆମର ଦଣ୍ଡ ବ୍ୟବସ୍ଥା । ଏଭଳି ଅମାନୁଷିକ କାର୍ଯ୍ୟାବଳୀ ପାଇଁ ଦଣ୍ଡ ଦେବାର ସମୟସୀମା ଖୁବ୍ ଅଧିକ ହୋଇଯାଉଛି । ଗୋଟିଏ

ମୁହୂର୍ତ୍ତର ପାଶବିକ ଘଟଣାର ଫଳାଫଳ ଶୁଣିବା ପାଇଁ ଯେଉଁ ବାପାମାଆ ଅପେକ୍ଷା କରିଥା'ନ୍ତି, ସେମାନେ ବଞ୍ଚିଥିଲେ ତ ଶୁଣିବେ ! ତାଙ୍କର ଇଚ୍ଛା ହେଉ ନ ଥିବ, ତାଙ୍କର କନ୍ୟାରତ୍ନର ବୀଭତ୍ସ କାହାଣୀକାରର ବୀଭତ୍ସ ଦଣ୍ଡ ଦେଖିବା ପାଇଁ, ଶୁଣିବା ପାଇଁ ! ସାଙ୍ଗସାଥୀ, ଆତ୍ମୀୟସ୍ୱଜନର ଉକ୍ରଣ୍ଠାକୁ ଆମେ ଆଉ କେତେଦିନ ଯାଏ ଦବାଇ ରଖିପାରିବା ? ତେଣୁ ବିଚାର ଓ ଦଣ୍ଡ ବ୍ୟବସ୍ଥାର ଶେଷକଥାକୁ ଖୁବ୍ ଶୀଘ୍ର ଉପସ୍ଥାପନା କରିବା ଜରୁରୀ ।

ଶେଷରେ ଆସେ ଯୁବତୀମାନଙ୍କର କଥା । ସେମାନେ ନିଜକୁ ରକ୍ଷା କରିବାର ଅସ୍ତ୍ର ପାଖରେ ରଖନ୍ତୁ । ପ୍ରତିରୋଧ କରିବାର ଶକ୍ତି ହାସଲ କରନ୍ତୁ । ଦରକାର ହେଲେ କୌଶଳରେ ଯୁବତୀ-ସମାଜ ସେହିଭଳି ଯୁବକମାନଙ୍କୁ ଆକ୍ରମଣ କରନ୍ତୁ; ତା'ହେଲେ ହୁଏତ ଯୁବକମାନେ ଭୟ କରିବେ । ସର୍ବୋପରି ଯୁବସମାଜ ସଂଯମତା ଆଚରଣ କରନ୍ତୁ ଓ ଏ ସମାଜର ଭବିଷ୍ୟତ ପିଢ଼ି ପାଇଁ ଉଦାହରଣ ହୁଅନ୍ତୁ । ନାରୀ-ନାରାୟଣୀ ନୁହେଁ, ଉତ୍ତମ ନାରୀ-ନାଗରିକ ହୋଇ ସମାଜକୁ ଉପହାର ଦିଅନ୍ତୁ ।

('ବିଶ୍ୱାସ' ସମ୍ବାଦପତ୍ରରେ ପ୍ରକାଶିତ ପ୍ରବନ୍ଧର କିୟଦଂଶ)

ଅନସୂୟା ନନ୍ଦ

## ହେଇ ଆସିଗଲା ଫଗୁଣ



ଶ୍ରୀ ନଦୀୟା ବିହାରୀ ମହାନ୍ତି

ହେଇ ଆସିଗଲା ଫଗୁଣ
ଫଗୁଣ.........।୦।
ଗାଁଠୁ ସହରେ ଲାଗେ ସଜବାଜ
ସଭିଙ୍କ ମନରେ ହୋଲିର ମଉଜ;
ହେବ ଏବେ ଦୋଳ ମେଲଣ......।୧।
ହେଇ ଆସିଗଲା ଫଗୁଣ !

ହାତେ ଧରି କିଏ ରଂଗ ପିଚକାରୀ;
ବିଞ୍ଚିବେ ଅବିର ଝିରି ଝିରି ଝିରି
ହେବ ରାଧାକୃଷ୍ଣ ମିଳନ ।୨।
ହେଇ ଆସିଗଲା ଫଗୁଣ....।
ବହଇ ମଳୟ ସୁଲୁ, ସୁଲୁ, ସୁଲୁ
ଆନନ୍ଦ ଉତ୍ସବେ ଧରା ହୁଲୁହୁଲୁ
ସରସେ, ହରଷ ପରାଣ ।୩।
ହେଇ ଆସିଗଲା ଫଗୁଣ ।
ଫୁଲ ଆମ୍ବ ଗଛେ କଷି ପେଛି ପେଛି
କୋଇଲିର କୁହୁ ମନେ ଭରେ ଶାନ୍ତି
ଦୂରେ ଯାଏ ଶୀତ କଷଣ.......।୪।
ହେଇ ଆସିଗଲା ଫଗୁଣ....!
ରଂଗ ସାଥେ ମିଳି ହାସ୍ୟ ରସ ବ୍ୟଙ୍ଗ
ସରଜେ ଜଗତେ ବ୍ୟଙ୍ଗର ତରଙ୍ଗ
କରି ଦୋଳ ଯାତ ବରଣ......।୬।
ହେଇ ଆସିଗଲା ଫଗୁଣ....!

*ତଳତେଲେଙ୍ଗା ବଜାର, କଟକ-୭୫୩୦୦୯*



# ସ୍ୱରୂପରେ ସ୍ୱରୂପ ନାୟକ

ଶ୍ରୀ କାଞ୍ଚିନାରାୟଣ ମହାନ୍ତି

ମସିହା ଊଣେଇଶ ଶହ ସତାବନ । ପଞ୍ଚମ ଶ୍ରେଣୀରୁ ସିନେମା ଜଗତରେ ପ୍ରବେଶ କରିଥିବା କୁନି କୃଷ୍ଣରୂପୀ ସ୍ୱରୂପ ନାୟକ ସିନେମାରେ ପ୍ରଥମେ ମୁହଁରେ ରଂଗ ବୋଲି ଦର୍ଶକଙ୍କ ପାଖଲୋକ ହେବାର ଆରମ୍ଭଟା କିନ୍ତୁ ଭିନ୍ନ ମୋଡ଼ ନେଲା । ସେ କଲମ ଓ ହାର୍ମୋନିୟମ ଧରି ଦର୍ଶକ/ଶ୍ରୋତାମାନଙ୍କର ହୃଦୟରେ ଭେଦିଗଲେ ।

ଏକସମୟରେ ସେ ଜଣେ ଅଭିନେତା, ଗୀତିକାର, ସଂଗୀତକାର, ଆଶୁକବି ଓ ଅନ୍ୟାନ୍ୟ ବହୁ ପ୍ରତିଭାର ଅଧିକାରୀ । ବିନା ଗୁରୁରେ ସଫଳତାର ଚରମ ସୋପାନରେ ପହଞ୍ଚି ପାରିଥିବା ଓଡ଼ିଶାର ସଂଗୀତ ନିର୍ଦ୍ଦେଶକମାନଙ୍କ ମଧ୍ୟରେ ବ୍ୟତିକ୍ରମ । ବ୍ୟତିକ୍ରମ ଭିତରେ ଶୁଦ୍ଧତା ଆଉ ନିଛକ ଓଡ଼ିଆ ସ୍ୱାଭିମାନର ବାର୍ତ୍ତା ବାଣ୍ଟିବାରେ ସେ ସିଦ୍ଧହସ୍ତ । ବାଣୀ ଓ ମୂର୍ଚ୍ଛନାର ତରଂଗରେ ତାଂକର ଏମିତି ଅଭିନବ ସୃଷ୍ଟି ସମ୍ଭାରର ଝଟକା ଭିତରୁ ତଟକା, ଚମତ୍କାରିତା ହେଲା-- "ଓଡ଼ିଶା ମୋ ଓଡ଼ିଶା, କେତେ ମଧୁର ତାର ଭାଷା, ତା'ର ସଂସ୍କୃତି ପଖାଳ କଂସା ।" ତାଙ୍କ ସୃଜନକୁ ଅନୁଶୀଳନ କରିବାର ପର୍ଯ୍ୟାୟ ଆଜି ବ୍ୟାପକ ।

କଳାକାର ପରିବାରରେ ଜନ୍ମ ହେଲେ ସମସ୍ତେ ଯେ କଳାକାର ହେବେ, ଏମିତି କୁହାଯାଇ ନ ପାରେ । ତେବେ ମଣିଷ ଉପରେ ପରିବେଶର ମଧ୍ୟ ପ୍ରଭାବ ପଡ଼େ । ସେ ଯେ କୌଣସି କାରଣରୁ ହେଉ ୧୯୫୭ ମସିହାରୁ ଧାରାବାହିକ ଭାବେ ୧୯୭୬ ମସିହା ପର୍ଯ୍ୟନ୍ତ ସେ ଚିତ୍ରାଭିନେତା । 'ସିରୋ କମେଡ଼ି' ତାଙ୍କର ବେଶୀ ସଫଳ ପର୍ଯ୍ୟାୟ । ୧୯୭୬ ମସିହାରେ ସେ ନଈକୂଳ, ଗଛମୂଳ, ଘାସପଡ଼ିଆ, ଓଳିପିଣ୍ଡା ଯେଉଁଠି ପାରିଲେ, ଲେଖି ଚାଲିଲେ ଏବଂ କଣ୍ଠ ଦାନ କରିବାକୁ ଯୋଡ଼ିଥିଲେ ଶ୍ରୀକାନ୍ତ ଦାସଙ୍କୁ । ଇ.ପି. ରେକର୍ଡସ୍ ପରେ ରେକର୍ଡସ୍ କରି ଆଉ ପଛକୁ ଫେରିନାହାନ୍ତି ସେଦିନୁ । ନିଜେ ଲେଖିବା ଓ ନିର୍ଦ୍ଦେଶନା ଦେବା ପେଷା ଭାବରେ ଗ୍ରହଣ କରିନେଇ ସଂଗୀତ ରାଜ୍ୟରେ ବିଚରଣ କରୁଛନ୍ତି ଅଦ୍ୟାବଧି ।

ତାଙ୍କ ରଚିତ ପ୍ରଥମ ଚଳଚ୍ଚିତ୍ର ସଂଗୀତ ହେଲା ଆଲୋ କଳା ଶାରୀ.... । ଜୟଦେବ, ଲକ୍ଷ୍ମୀ, ସ୍ତ୍ରୀ, ସଂସାର, ସୁନା ସଂସାର, ଯଶୋଦା ଇତ୍ୟାଦି ଚଳଚ୍ଚିତ୍ରରେ ଅଭିନୟ ପରେ ପ୍ରଥମ ଚଳଚ୍ଚିତ୍ର ସଂଗୀତ ନିର୍ଦ୍ଦେଶକ ହେଲେ 'ଜଗାକାଳିଆ' ଚଳଚ୍ଚିତ୍ରରେ । କିନ୍ତୁ 'ହୀରାନୀଳା' ଛବି ତାଙ୍କୁ ଜଣେ ସଂଗୀତ ନିର୍ଦ୍ଦେଶକର ସ୍ୱୀକୃତି ଦେଲା ।

ଓଡ଼ିଆ ପ୍ରତିଭାବାନ୍ କଳାକାରମାନଙ୍କୁ ସୁଯୋଗ ଦେବା ତଥା ଓଡ଼ିଆ ସଂସ୍କୃତି, ଲୋକସଂସ୍କୃତି ଓ ପରମ୍ପରାର ଅନୁଶୀଳନ କରି ସଂଗୀତ ମାଧ୍ୟମରେ ସାଧାରଣ ଜନତାଙ୍କ ପର୍ଯ୍ୟନ୍ତ ପହଞ୍ଚାଇବା ପାଇଁ ସେ ସତତ ଚେଷ୍ଟିତ। ଧାଡ଼ିକରେ କହିଲେ, ସେ ଜଣେ ଓଡ଼ିଆ ଜାତିକୁ ଭଲପାଉଥିବା ମଣିଷ।

ସଂଗୀତକୁ ଜୀବନ ଓ ଜୀବିକା କରି ଆମ ରାଜ୍ୟରେ ଜିଇଁବା ଯେ କି ଦୁର୍ବହ, ତାହା ଏଇ ରାଜ୍ୟର ଲୋକମାନେ ବେଶ୍ ବୁଝିପାରିବେ। ତେବେ ସ୍ୱରୂପ ଜଣେ ନିର୍ବିକାର, ହସଖୁସି ମିଜାଜ୍‌ର ମଣିଷ । ଓଡ଼ିଆ କଳାକାରମାନଙ୍କ ପାଇଁ ତାଙ୍କ ଛାତିରେ ଅସୀମ ଦରଦ। ସେଇଥିପାଇଁ ସେ ଆଜିଯାଏ ଅଣଓଡ଼ିଆ ବା ବମ୍ବେ କଣ୍ଠଶିଳ୍ପୀଙ୍କ ପଛରେ ଗୋଡ଼େଇ ଯାଇନାହାନ୍ତି । ସେ ମୁକ୍ତ କଣ୍ଠରେ 'ମୋ କୋଳ ତୋର ଝୁଲଣା', 'ପ୍ରିୟା ଓ ପ୍ରିୟା' କ୍ୟାସେଟ୍ ଉନ୍ମୋଚନ ଅବସରରେ କହିଥିଲେ, "ଆମରାଜ୍ୟରେ ବମ୍ବେ କଣ୍ଠଶିଳ୍ପୀମାନଙ୍କଠାରୁ ଯଥେଷ୍ଟ ଭଲ କଣ୍ଠଶିଳ୍ପୀ ଅଛନ୍ତି। ଆମେ ଯଦି ଗୀତ ପାଇଁ ବମ୍ବେ ଦୌଡ଼ିବା, ଆମ ଓଡ଼ିଆ କଣ୍ଠଶିଳ୍ପୀ, ବାଦ୍ୟଶିଳ୍ପୀ ଓ ଷ୍ଟୁଡିଓ କଳାସାହିତ୍ୟର ଅବସ୍ଥା କ'ଣ ହେବ !" ମଜା ମଜା କଥା କହି ଅନ୍ୟ ମନକୁ ଭିଜେଇ ଆପଣାର କରିନେଇଥାନ୍ତି ମଣିଷପଣିଆରେ।

ତାଙ୍କ ସମ୍ପର୍କରେ ଛୋଟ ଏକ ନଜିର ବିଶିଷ୍ଟ ସଂଗୀତଜ୍ଞ ବସନ୍ତ ନାୟକ ବ୍ୟକ୍ତ କରିଥିଲେ -- ବମ୍ବେର ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ଆର୍.ଡି. ବର୍ମନ୍ ବିଭିନ୍ନ ରାଜ୍ୟରୁ ଚଳଚ୍ଚିତ୍ର ପ୍ରଯୋଜକ ଓ ଗୀତିକାରମାନଙ୍କୁ ଡାକିଥିଲେ ଜାତୀୟ ସଂହତି ଉପରେ ଗୀତ ଲେଖିବାକୁ।

ଓଡ଼ିଶାରୁ ପ୍ରତିନିଧିତ୍ୱ କରିଥିଲେ ବସନ୍ତବାବୁ ଓ ସ୍ୱରୂପବାବୁ। ପ୍ରଥମ ଦିନ ଫାଷ୍ଟ୍ ସିଟିଂଗ୍‌ରେ ଓଡ଼ିଆ ଗୀତ ଲେଖି ସ୍ୱରୂପବାବୁ ବର୍ମନ ସାହେବ୍‌ଙ୍କୁ ବଢ଼େଇ ଦେଇଥିଲେ। ବର୍ମନ ସାହେବ୍ ବହୁତ ଖୁସି ହୋଇଗଲେ ସେ ଗୀତର ମର୍ମ ବୁଝି; ଅଥଚ ଚାରିଦିନ ବିତିଗଲା ବଂଗଳା ଗୀତିକାରଙ୍କର। ଶେଷରେ ବିରକ୍ତ ହୋଇ ବର୍ମନ୍ ସାହେବ୍ କହିଥିଲେ-- ସ୍ୱରୂପବାବୁଙ୍କ ରଚିତ ଓଡ଼ିଆ ଗୀତକୁ ବଂଗଳାରେ ଅନୁବାଦ କରି ରେକର୍ଡିଂ କରିଦିଅ। ତାହା ହିଁ ହୋଇଥିଲା। ଏହା କମ୍ ଗର୍ବର ବିଷୟ ନୁହେଁ।

ସ୍ୱରୂପଙ୍କ ସ୍ୱରୂପକୁ ଦେଖି ସ୍ପଷ୍ଟ ଚିହ୍ନି ପାରିଥିଲେ ସେ। ତେଣୁ ସେ କୋଡ଼ିଏ ବର୍ଷ ପୂର୍ବରୁ ତାଙ୍କୁ ବମ୍ବେରେ ରହିଯିବା ପାଇଁ ପ୍ରସ୍ତାବ ଦେଇଥିଲେ। ହେଲେ ସ୍ୱରପବାବୁ କହିଥିଲେ, "ମୋ ମା' ଆଉ ମାଟି ମୋ ପାଇଁ ପ୍ରିୟ। ମୁଁ ସେଇଠି ରହି ଏଇ ସଂଗୀତସେବା କରିପାରିବି, ଏତିକି ଆଶୀର୍ବାଦ ରହିଥାଉ।"

କୌଣସି ସଂଗୀତର ସଫଳତା କହିଲେ- ଅତି ସରଳ ଶବ୍ଦ ଓ ସହଜ ଭାବେ ସମସ୍ତେ ବୁଝିପାରୁଥିବା ରଚନାକୁ ସେ ଗ୍ରହଣ କରିଥାନ୍ତି। ଜଣେ ଗାୟକ ଭାବେ ମଧ୍ୟ ତାଙ୍କର ପ୍ରତିଷ୍ଠା ରହିଛି।

ଆଧୁନିକ ସଂଗୀତ, ଭଜନ, ପଲିଟିକାଲ୍ ବ୍ୟଙ୍ଗ ଇତ୍ୟାଦିକୁ ନେଇ ସେ ଅନେକ କ୍ୟାସେଟ୍ କରିଛନ୍ତି ସଂଗୀତ ନିର୍ଦ୍ଦେଶକ ଭାବେ।

ତାଙ୍କ ଜୀବନସାଥୀ ମଧ୍ୟ ମିଳିଛନ୍ତି ସେଇ ଚଳଚ୍ଚିତ୍ର ରାଇଜରୁ। ସେ ହେଲେ ଅଭିନେତ୍ରୀ ନିହାରିକା। ପ୍ରଥମେ ଇଷ୍ଟମେନ୍ କଲର

ଓଡ଼ିଆ କଥାଚିତ୍ର 'ଗପ ହେଲେ ବି ସତ'  ସେ ଅଭିନୟ ଆରମ୍ଭ କରିଥିଲେ। ସେଇଠି ସମ୍ପର୍କ ଓ ବନ୍ଧନ। ଅପୂର୍ବ ସମନ୍ୱୟରେ ଚିରହରିତ ତାଙ୍କ ନୀଡ଼ରଚନା ଓ ଗୀତରଚନା। ତାଙ୍କ ରଚନାରେ ସାହିତ୍ୟର ମାତ୍ରା ଅଛି, ଶବ୍ଦର ଖେଳ ଅଛି। ତେଣୁ ଭଲଲାଗେ, ମନଛୁଏଁ । 'ଲେଲବିନା'ଠାରୁ 'ଓଁ ଶାନ୍ତି' ପର୍ଯ୍ୟନ୍ତ କେତେ ସର୍ଜନା ତାଙ୍କର ମନ ଚହଲେଇ ଦେଇଛି।

ସେ ଜଣେ ଦେଶୀ ମଣିଷ। ଓଡ଼ିଆ ଓ ଓଡ଼ିଶା ପାଇଁ ସ୍ୱାଭିମାନୀ । ଟିକିଏ ତଳେଇ ଚିନ୍ତା କଲେ- "ଆମ ପିଲା ଓଡ଼ିଆ ସ୍କୁଲ୍‌ରେ ପଢ଼ିବେ ନାହିଁ, ଆମ ଶିଳ୍ପୀ ଓଡ଼ିଆ ଗୀତ ଗାଇବେ ନାହିଁ, ଆମେ ଓଡ଼ିଆ ସାହିତ୍ୟ ଛୁଇଁବା ନାହିଁ, ଏ ଜାତି ବଞ୍ଚିବ ତ ?

ସ୍ୱରୂପ ନାୟକ କେତେ ଲୋକପ୍ରିୟ, ଏକଥା ତାଙ୍କର ସଂଗୀତ ରଚନା ଓ ସଂଯୋଜନା ହିଁ ପ୍ରମାଣ କରିବ। କାହା କଥାରେ କେହି ପ୍ରତିଷ୍ଠିତ ହୁଏନାହିଁ, ବିଦଗ୍ଧ ଶ୍ରୋତାମାନେ ହିଁ ପ୍ରତିଷ୍ଠା ଦିଅନ୍ତି।

*ଆଶ୍ରମ, ଶ୍ରୀବିହାର କଲୋନି, କଟକ- ୭୫୩୦୦୮*

---



୧୪।୨--ବିଶିଷ୍ଟ କବି, ଅଧ୍ୟାପକ ଡ. ପ୍ରସନ୍ନ କୁମାର ମିଶ୍ରଙ୍କର ୭୩ ବର୍ଷରେ ପରଲୋକ। ସେ ତାଙ୍କର ସାରସ୍ୱତ ସାଧନା ପାଇଁ ସାରଳା ପୁରସ୍କାର, ବିଷୁବ, ସାହିତ୍ୟ ଏକାଡେମୀ ଇତ୍ୟାଦି ବହୁ ଅନୁଷ୍ଠାନରୁ ସମ୍ମାନିତ ।

୧୯।୨--ଓଡ଼ିଆ ଚଳଚ୍ଚିତ୍ରର କଳା ନିର୍ଦ୍ଦେଶକ ନିଖିଳ ବରଣ ସେନ୍‌ଗୁପ୍ତ (ନିଖିଳଦା)ଙ୍କ ୭୧ ବର୍ଷରେ ପରଲୋକ।

୨୨।୧--ପ୍ରଖ୍ୟାତ ତେଲଗୁ ଅଭିନେତା ତଥା ନିର୍ଦ୍ଦେଶକ ଅକ୍କିନେନି ନାଗେଶ୍ୱର ରାଓଙ୍କର ୯୧ବର୍ଷରେ ପରଲୋକ। ସେ ଦାଦା ସାହେବ ଫାଲକେ, ପଦ୍ମବିଭୁଷଣ, ପଦ୍ମଶ୍ରୀ ପାଇଥିଲେ।

# ପୁସ୍ତକ ପରିଚୟ

**ଯଜ୍ଞକନ୍ୟା ଦ୍ରୌପଦୀ**--ଲେଖକ- **ଶ୍ରୀ ନରେଶ ଚନ୍ଦ୍ର ବେହେରା,** ଉତ୍ତରପଡ଼ା, ଅନୁଗୁଳ। ମୂଲ୍ୟ- ୧୦ ଟଙ୍କା ମାତ୍ର।

ଡିମେଇ ୧/୮ ଆକାରର ଏ ପୁସ୍ତକଟିରେ ଦ୍ରୌପଦୀଙ୍କର ଜନ୍ମ, ସ୍ୱୟମ୍ବର, ବନବାସ, ବେଣୀବନ୍ଧନ ଇତ୍ୟାଦି ସରଳ ଗଳ୍ପ ଆକାରରେ ବର୍ଣ୍ଣିତ ହୋଇଛି ଖବ୍ ସଂକ୍ଷେପରେ, ଯେଭଳି ଶିଶୁମାନଙ୍କୁ ଭଲଲାଗିବ। ପ୍ରତିଟି ଭାଗରେ ପ୍ରଥମରୁ ଚିତ୍ର ରହିଛି। ପ୍ରଚ୍ଛଦଟି ରଂଗିନ୍ ହେବା ସହ ଋଷିମାନଙ୍କର ଯଜ୍ଞରେ ବସିବାର ଚିତ୍ର ରହିଛି।

**ଆମ ଶନିଗ୍ରହ ବିଜ୍ଞାନ**-- ଲେଖକ- **ଶ୍ରୀ ହିମାଂଶୁ ଶେଖର ଫତେସିଂହ**, 'ଅଭ୍ୟର୍ଥନା', ଇବ୍ ଥର୍ମାଲ୍, ଝାରସୁଗୁଡ଼ା- ୭୬୮୨୩୪, ମୂଲ୍ୟ- ୧୨ ଟଙ୍କା ମାତ୍ର।

ଏହି ଶିଶୁ-ବିଜ୍ଞାନ ପୁସ୍ତକରେ ଦଶଟି ଶନିଗ୍ରହ ବିଷୟକ ତଥ୍ୟ ରହିଛି। ଆଜିକାଲିର ପିଲାମାନଙ୍କ ପାଇଁ ବିଜ୍ଞାନ ବିଷୟକ ତଥ୍ୟସମୂହ ଯୋଗୁଁ ଜ୍ଞାନ ବୃଦ୍ଧି କରିବା ପାଇଁ ଏହି ଡିମେଇ ଏହି ୧/୮ ଆକାରର ପୁସ୍ତକଟି ସହାୟକ ହେବ-- ଏଥିରେ ସନ୍ଦେହ ନାହିଁ। ପ୍ରଚ୍ଛଦଟି ଆକର୍ଷଣୀୟ ହୋଇଛି। ପୁସ୍ତକଟି ଆଦୃତ ହେବାର ଆଶା।

**ମୋ ଦୃଷ୍ଟିରେ ଆମେରିକା--** ଲେଖକ- **ଡ. ପ୍ରଭାତୀ ମିଶ୍ର**, ପ୍ରକାଶକ- ଜ୍ଞାନଯୁଗ ପବ୍ଲିକେଶନ୍, ଏନ୍- ୬/୪୨୮, ଆଇ. ଆର୍. ସି, ନୂଆପଲ୍ଲୀ, ଭୁବନେଶ୍ୱର- ୧୫, ମୂଲ୍ୟ- ୩୦୦ ଟଙ୍କା।

ଏହି ବୋର୍ଡ ବନ୍ଧେଇ ଡିମେଇ ଆକାରର ପୁସ୍ତକଟି ଆମର ହସ୍ତଗତ ହୋଇଛି। ଏଥିରେ ଆମେରିକାର ବିଭିନ୍ନ ସ୍ଥାନର ବିଶଦ ତଥ୍ୟସବୁ ରହିଛି। ନର୍ଥ କାରୋଲାଇନା, ଚିକାଗୋରୁ ୱିସ୍‌କନ୍‌ସିନ୍, ୱାଶିଂଟନ୍ ଡିସି, ସମ୍ବିଧାନ ରାଜ୍ୟ, କନେକ୍ଟିକଟ୍ ଇତ୍ୟାଦି ବିଷୟରେ ପାଠ କଲେ ଆମେରିକାରେ ଭ୍ରମଣ କଲା ଭଳି ମନେହେବ ଏବଂ ବିଦେଶର ସମସ୍ତ ତଥ୍ୟ ଜାଣିହେବ।

ପ୍ରଚ୍ଛଦରେ ଆମେରିକାର କିଛିସ୍ଥାନର ଚିତ୍ର ଖୁବ୍ ମନୋମୁଗ୍ଧକର ହୋଇଛି। ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଲେଖିକାଙ୍କର ଶ୍ରମ ସାର୍ଥକ ହେବ।

❀❀❀❀❀❀❀❀❀❀❀❀❀

## ଶବ୍ଦଧନ୍ଦା-ମାର୍ଚ୍ଚ, ୨୦୧୪

❀❀❀❀❀❀❀❀❀❀❀❀❀

ଶ୍ରୀ ପ୍ରିୟଦର୍ଶୀ ଶତପଥୀ

**୧।** କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।

**୨।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ।

**୩।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ।

**୪।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।

**୫।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ।

**୬।** ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ । ୩ । ୨୦୧୪

**୭।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | ୨ | * | ୩ | | ୪ |
| | * | | * | | ୫ | |
| | ୬ | | | | | * |
| * | | * | ୭ | | ୮ | ୯ |
| ୧୦ | | | | ୧୧ | | |
| | * | ୧୨ | | | * | |
| ୧୩ | | | * | ୧୪ | | |

### ସୂଚନା

**ବାମରୁ ଡାହାଣ--** ୧ । ଗଙ୍ଗା (୩), ୩ । ଐତିହାସିକ ଉଦ୍ୟାନ (୩), ୬। ଗୁଣ୍ଡିଚାଯାତ୍ରାର ପଞ୍ଚମ ଦିନ (୫), ୭। ପୂର୍ବବର୍ଣ୍ଣିତ (୨), ୮। ବାହ୍ୟାଡ଼ମ୍ବର (୨), ୧୦। ଶ୍ୱାନବିଶେଷ (୩), ୧୧। ନଜର (୨), ୧୨। ପରିବାବିଶେଷ (୨), ୧୩। ପ୍ରାଚୀନ ରାଜ୍ୟ (୩), ୧୪। ଅମୃତଭଣ୍ଡା (୩)।

**ଉପରୁ ତଳ --** ୧ । ଶିବପୂଜନ ତିଥି (୩), ୨। ଶୌର୍ଯ୍ୟବତୀ (୨), ୩। ପରିଧାନ (୨), ୪। ବାନର ସେନାପତି (୨), ୫। ମୂଲ୍ୟବାନ୍ (୨), ୬। ସୁନା (୨), ୭। ପରମାଣୁ କଣିକା (୩), ୯। ପିତୃପୂଜା ତିଥି (୪), ୧୦। ପକ୍ଷୀବିଶେଷ (୩), ୧୧। ବିଚାର (୩) ।

*--ବାଗଲପୁର, ଜଗତ୍‌ସିଂହପୁର-୭୫୪୧୦୨*

---

**ମାର୍ଚ୍ଚ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧। ଅନୁଧାବନ, ୨। ଅପା, ୪। କୃଷ୍ଣା, ୬। ଭୋଜନ, ୮। ଅର, ୧୦। ଆରୋହଣ, ୧୨। ଶୟନ, ୧୩। ବ୍ୟୟ, ୧୪। ବନ, ୧୫। ଉପବେଶନ।

**ଉପରୁ ତଳ--** ୧। ଅନୁଗମନ, ୨। ଅଜର, ୩। ପାନ, ୪। କୃଷ୍ଣଦ୍ୱୈପାୟନ, ୫। ଅବରୋହଣ, ୭। ଜୁଆଙ୍ଗ, ୮। ଅହନ୍, ୯। ଦଣ୍ଡାୟମାନ, ୧୧। ଆୟ, ୧୨। ଶବ ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ-- **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼; **ପ୍ରତିମାରାଣୀ ପାତ୍ରୀ,(୯ମ)** ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, ବାସୁଦେବପୁର, ଭଦ୍ରକ; **କାହ୍ନୁଚରଣ ଦାଶ,(୬ଷ୍ଠ)** ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଶାନ୍ତିପୁର, ବଲାଙ୍ଗୀର; **ନିଶିକାନ୍ତ ବେହେରା,** ବେଡ଼ାପଡ଼ା, ହିନ୍ଦୋଳ ରୋଡ୍, ଢେଙ୍କାନାଳ; **ସ୍ୱରୂପ କୁମାର ସାହୁ,** ଚମ୍ପୂଆ, କେନ୍ଦୁଝର; **ରାସେଶ୍ୱର ମହାନ୍ତ,** ଚମ୍ପୂଆ, କେନ୍ଦୁଝର; **ଅପୂର୍ବ, ଅନିତା, ସୁଶୋଭିତା, ଆନନ ଓ ବିଶାଲ ଅଭିନବ,** ଦିଗିସଳପା, ନବରଙ୍ଗପୁର; **ତାପସ କୁମାର ଷଣ୍ଢ,** ଗଡ଼ଗହମପୁର, ବାଲିବୋ, ଢେଙ୍କାନାଳ । ବିଳମ୍ବରେ ଆସିଥିବା ଫେବୃଆରୀ ମାସର ଠିକ୍ ଉତ୍ତରଦାତା-- **କାବ୍ୟ କଳ୍ପତରୁ ସି, ସମରେନ୍ଦ୍ର ଚନ୍ଦନବିନ୍ଦୁ ଦାଶ, କୁମାର ଅଭିଜିତ ନାୟକ ।**

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୪।୨--ବିଶିଷ୍ଟ କବି ଓ ଚିନ୍ତାନାୟକ ହରପ୍ରସାଦ ଦାସଙ୍କୁ ସମ୍ମାନଜନକ ମୂର୍ତ୍ତୀଦେବୀ ପୁରସ୍କାର ପ୍ରଦାନ।

୬।୨--ବିଜୁଜନତା ଦଳର ତିନିଜଣ ସଦସ୍ୟ କଳ୍ପତରୁ ଦାସ, ସରୋଜିନୀ ହେମ୍ବ୍ରମ୍, ଅନଂଗ ଉଦୟ ସିଂହଦେଓ ଓ କଂଗ୍ରେସ ଦଳର ରଂଜୀବ ବିଶ୍ୱାଳ ରାଜ୍ୟସଭାକୁ ନିର୍ବାଚିତ।

୭।୨--ବିଧାନ ସଭାରେ ୨୦୧୪-୧୫ ଆର୍ଥିକ ବର୍ଷର ପ୍ରଥମ ୪ ମାସ ପାଇଁ କାମଚଳା ବଜେଟ୍ ଆଗତ।

--କଟକ ମହାନଗର ନିଗମ ଫଳାଫଳରେ ୫୯ଟି ଓ୍ୱାର୍ଡରୁ ବିଜେଡିର ୩୭ଟି ଆସନ ହାସଲ।

୧୦।୨--୧୫୦ଜଣ ଯାତ୍ରୀଙ୍କୁ ନେଇ ଯାଉଥିବା ହୀରାକୁଦ ଜଳଭଣ୍ଡାରରେ ମର୍ମନ୍ତୁଦ ନୌକା ଦୁର୍ଘଟଣାରେ ୩୧ ଜଣ ମୃତ।

୧୩।୨--କଟକ ମହାନଗର ନିଗମର ନୂତନ ମେୟର ଭାବେ କର୍ପୋରେଟର ଅନିତା ବେହେରା ନିର୍ବାଚିତ।

୧୧।୨--କୋଣାର୍କ-ପୁରୀ ମାର୍ଗର ରାମଚଣ୍ଡୀ ମୁହାଣଠାରେ ଇଣ୍ଡିଆ ସର୍ଫିଂ ଫେଷ୍ଟିଭାଲ୍-୨୦୧୪ ଉଦ୍‌ଘାଟିତ।

## ଭାରତ ଖବର

୨୩।୧--ଜମ୍ମୁ ଓ କାଶ୍ମୀରରେ ପ୍ରବଳ ତୁଷାରପାତ ଯୋଗୁଁ ସଡ଼କ ଓ ବିମାନ ଯୋଗାଯୋଗ ଅଚଳ।

୩୧।୧--ଡିଜେଲ୍ ଲିଟର ପିଛା ୫୦ପଇସାକୁ ବୃଦ୍ଧି।

୩୧।୧--ଏନ୍‌ସିପି ମୁଖ୍ୟ ଶରଦ ପାଓ୍ୱାର, କଂଗ୍ରେସ ନେତା ମୋତିଲାଲ୍ ଭୋରା, କୁମାରୀ ଶୈଳଜାଙ୍କ ସମେତ ୩୭ଜଣ ନିର୍ଦ୍ୱନ୍ଦ୍ୱରେ ରାଜ୍ୟସଭାକୁ ନିର୍ବାଚିତ।

୪। ୨--ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ବିଚାରପତି ଅଶୋକ କୁମାର ସାହୁ ସପ୍ତମ ବେତନ ଆୟୋଗର ଅଧ୍ୟକ୍ଷ ଭାବେ ଅବସ୍ଥାପିତ। କେନ୍ଦ୍ର ସରକାରଙ୍କ ମହଂଗା ଭତ୍ତା ୧୦% ବୃଦ୍ଧି।

୫।୨--ଦେଶର ପ୍ରଥମ କ୍ରୀଡ଼ାବିତ୍ ଭାବେ କ୍ରିକେଟ ଖେଳାଳୀ ସଚ୍ଚିନ ତେନ୍ଦୁଲକର ଓ ପ୍ରଖ୍ୟାତ ବୈଜ୍ଞାନିକ ସି.ଏନ୍.ଆର୍. ରାଓଙ୍କୁ ଭାରତ ରତ୍ନ ପ୍ରଦାନ।

୫।୨--କର୍ମଚାରୀଙ୍କୁ ମାସକୁ ସର୍ବନିମ୍ନ ୧୦୦୦ଟଙ୍କା ପେନ୍‌ସନ୍ ପ୍ରଦାନ ପ୍ରସ୍ତାବକୁ କର୍ମଚାରୀ ଭବିଷ୍ୟନିଧି ସଂଗଠନର ଅନୁମୋଦନ ଲାଭ।

୯।୨--ନାରାୟଣ ରାମଚନ୍ଦ୍ରନ ଭାରତୀୟ ଅଲମ୍ପିକ୍ ଆସୋସିଏସନ୍ (ଆଇ.ଓ.ଏ.)ର ନୂତନ ଅଧ୍ୟକ୍ଷ ନିର୍ବାଚିତ। ସେ ବିଶ୍ୱ ସ୍କ୍ୱାଶ୍ ମହାସଂଘର ବର୍ତ୍ତମାନ ସଭାପତି ଅଛନ୍ତି।

୧୨।୨--ଲୋକସଭାରେ କାମଚଳା ରେଳବଜେଟ୍ ଆଗତ। ୬୪,୩୦୫ କୋଟିର ବ୍ୟୟ ବରାଦ। ୨୨ଟି ନୂଆ ଟ୍ରେନ୍ ଚଳାଚଳ ସମ୍ପର୍କରେ ଘୋଷଣା। ଓଡ଼ିଶା ଭାଗରେ ଗୋଟିଏ ଏକ୍ସପ୍ରେସ୍ ଓ ଦୁଇଟି ପାସେଞ୍ଜର।

୧୪।୨--ଦିଲ୍ଲୀ ମୁଖ୍ୟମନ୍ତ୍ରୀ ଅରବିନ୍ଦ କେଜରିଓ୍ୱାଲଙ୍କର ଇସ୍ତଫା ପ୍ରଦାନ। ଫଳରେ ୪୯ ଦିନର ଆମ୍ ଆଦମୀ ପାର୍ଟି ସରକାର ଅନ୍ତଃ ଘଟିଛି।

୧୬।୨--ଦିଲ୍ଲୀରେ ରାଷ୍ଟ୍ରପତି ଶାସନ ଲାଗୁ । ବିଧାନସଭା ଅନିର୍ଦ୍ଦିଷ୍ଟ କାଳ ପାଇଁ ମୁଲତବୀ ଘୋଷଣା।

୧୭।୨--ଲୋକସଭାରେ କାମଚଳା ବଜେଟ୍ ଉପସ୍ଥାପିତ। ସରକାରୀ ବ୍ୟୟ ୨.୨୪ଲକ୍ଷ କୋଟି ଟଂକା। ଆୟକର ସ୍ଲାବ୍ ଅପରିବର୍ତ୍ତିତ। ଜୁନ୍ ୨୦ ପର୍ଯ୍ୟନ୍ତ କାର, ଦୁଇଚକିଆ ଗାଡ଼ି ଓ ମୋବାଇଲ୍ ସେଟ୍ ଦାମ୍ କମିବ।

୧୮।୨--ଲୋକସଭାରେ ତେଲେଂଗାନା ବିଲ୍ ଗୃହୀତ। ନିଲମ୍ବିତ କଂଗ୍ରେସ ସଦସ୍ୟ ରଗଡ଼ପତି ରାଜଗୋପାଲଙ୍କର ଇସ୍ତଫା।

## ବିଦେଶ ଖବର

୩୦।୧--ଅସ୍ତ୍ରଶସ୍ତ୍ର ଚୋରା କାରବାର ମାମଲାରେ ଢାକାଠାରେ ଉଲଫା ନେତା ପରେଶ ବରୁଆଙ୍କର ସମେତ ୧୪ଜଣଙ୍କୁ ଫାଶୀ ଦଣ୍ଡାଦେଶ।

୨।୨--ଇଣ୍ଡୋନେସିଆର ଉତ୍ତର ସୁମାତ୍ରା ମାଉଣ୍ଟ୍ ସିନାବଂଗରେ ଆଗ୍ନେୟ ଉଦ୍‌ଗୀରଣ ଯୋଗୁଁ ୧୬ଜଣ ମୃତ ଓ ଶତାଧିକ ଲୋକ କ୍ଷତିଗ୍ରସ୍ତ।

୧୦।୨--ନେପାଳୀ କଂଗ୍ରେସର ଅଧ୍ୟକ୍ଷ ସୁଶୀଲ କୋଇରାଲା ନେପାଳର ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତ।

୧୪।୨-- ବ୍ରିଟେନ୍‌ର ଦକ୍ଷିଣାଞ୍ଚଳରେ ବନ୍ୟା ଯୋଗୁଁ ବ୍ୟାପକ କ୍ଷୟକ୍ଷତି। ଗତ ୭୦ ବର୍ଷ ଭିତରେ ବ୍ରିଟେନର ଏହା ସବୁଠାରୁ ଭୟାବହ ବନ୍ୟା।

ଗତ ସଂଖ୍ୟାରେ ଏହି ସ୍ତମ୍ଭରେ ପ୍ରକାଶିତ ଖବରରେ 'ଭୁବନେଶ୍ୱର ମହାନଗର ନିଗମରେ ବି.ଜେ.ପି.ସ୍ଥାନରେ ବି.ଜେ.ଡି.ର ସଂଖ୍ୟା ଗରିଷ୍ଠତା ହାସଲ' ହେବ। ଏହି ତ୍ରୁଟି ପାଇଁ ଆମେ ଦୁଃଖିତ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597